# ହଂସଧ୍ୱନି

ଶ୍ରୀ ନରସିଂହ ମିଶ୍ର
ଫୋ. : ୨୫୫୫୩୩୩

ପ୍ରଥମ ମୁଦ୍ରଣ - ୨୦୧୫

ପ୍ରକାଶକ : ସାରସ୍ୱତ ପ୍ରକାଶନୀ
ଏନ୍/୧ - ୨୬୬
ଭୁବନେଶ୍ୱର - ୧୫

ମୂଲ୍ୟ : ୧୦୦ଟଙ୍କା

**HANSA DHWANI**

*Writer :*
**Narasinha Mishra**
Ph. 2555333

First Edition - 2015

Publisher -
Saraswata Prakashani
N1/266,
Bhubaneswar-15

Price - Rs 100/-

# ପ୍ରାକ୍‌କଥନ

ଏ' ପୁସ୍ତକରେ ସନ୍ନିବେଶିତ କବିତାଗୁଡ଼ିକ ମୋର ଅତିକ୍ରାନ୍ତ ବୟସର, ସ୍ମୃତି ଶିଥିଳ ଅସଂଲଗ୍ନ ଭାବଧାରାର ସମାହାର ମାତ୍ର । କହି ପାରିବିନି, ଏହା ପାଠକମାନଙ୍କୁ କେତେ ଆନନ୍ଦ ଦେବ । ତେବେ ଆଶ୍ୱାସନାର କଥା, ପ୍ରତି ଅନୁଭୂତି ରସାଣିତ କବିତା, ରସାତ୍ମକ ଭାବବୋଧର ରସମୟ ପ୍ରକାଶ । ଏହା ପାଠକର ମନକୁ ରସାପ୍ଳୁତ କରିଥାଏ । ଏହି ପୁରାତନ ସହକାର ତରୁର ମଳୟ ଛୁଆଁ ବକୁଳ ମଞ୍ଜରୀ, ପାଠକମନକୁ ମହକିତ କରି ପାରିବ ବୋଲି, ମୁଁ ଆଶାବାଦୀ ।

ବିବିଧତା, କବିତା ଗୁଡ଼ିକର ସ୍ୱାତନ୍ତ୍ର୍ୟ । ତା' ମଧ୍ୟରେ ଗୁମ୍ଫିତ ହୋଇଛି, ଦର୍ଶନ, ବିଜ୍ଞାନ, ଆତ୍ମଚିନ୍ତନ, ଆଧ୍ୟାତ୍ମିକତା, ଇତିହାସ, କିଂବଦନ୍ତୀ, ପ୍ରକୃତିଚିତ୍ର ଓ ଦେଶାତ୍ମବୋଧର ମହନୀୟବାର୍ତ୍ତା ।

କବିତାଗୁଡ଼ିକ, ଗୀତି କବିତା ପର୍ଯ୍ୟାୟଭୁକ୍ତ । ମୃଦୁଳ ଛନ୍ଦର ଏକ ଧ୍ୱନି ଧାରା, ଏହା ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ପ୍ରବାହିତ ହେଉଛି । ଆଗାମୀ ପିଢ଼ିର ପାଠକମାନଙ୍କ ପାଇଁ କିପରି ଏହା ଗ୍ରହଣୀୟ ହେବ, ସମୟ କହିବ । ତଥାପି ପ୍ରତ୍ୟୟବାଦୀ କବି ଘୋଷଣା କରୁଛି

"ହେ ମାନବ ଗଣ !
ଧ୍ୱନିମୟ ଏ ବିଶ୍ୱ ଭୁବନ ।
ସୁଧାମୟ ଶବ୍ଦଧାରା କର ପ୍ରବାହିତ
ସିକ୍ତ ହେଉ ଭାବଭୂମି
ଗାଇ ଉଠୁ ପ୍ରାଣର ସଙ୍ଗୀତ
ଏ' ଜୀବନ ବୀଣା,
ଧ୍ୱନିର ତରଙ୍ଗ ତୋଳୁ ବିଶ୍ୱହୃଦ ଜିଣା ।"

ଭାବୁଥିଲି, ସମଶ୍ରେଣୀଭୁକ୍ତ କବିତାଗୁଡ଼ିକ ଏକାଠି ରଖିବି ବୋଲି କିନ୍ତୁ ଫେଣ୍ଟା ଫେଣ୍ଟି, ଘଣ୍ଟା ଘଣ୍ଟିର ସ୍ୱାଦ ନିଆରା; ତାହା ପାଠକମାନଙ୍କର ଗ୍ରହଣୀୟ ହେବ ବୋଲି ମୁଁ ଆଶା କରୁଛି ।

ପରିଶେଷରେ, ପୁସ୍ତକର ନାମ କରଣ ନେଇ ଏତିକି କହିବି, ହଂସଧ୍ୱନିର ଅର୍ଥ ହେଉଛି ନିଃଶ୍ୱାସ ପ୍ରଶ୍ୱାସର ଧ୍ୱନିଧାରା । ବୋଧହୁଏ, ଲେଖାଗୁଡିକ ଅନ୍ତର୍ମୁଖୀ ଜୀବନ ସଙ୍ଗୀତର ଅନ୍ତିମ ଉଚ୍ଚାରଣ.... । ପ୍ରତ୍ୟେକ କବିତା ସେହି ଧ୍ୱନି ଧାରାର ଏକ ଲଳିତ ମୂର୍ଚ୍ଛନା । ହଂସଗୀତିର କଳ କୂଜନ ଏହି ପାଠକମାନଙ୍କୁ ଆନନ୍ଦିତ କରିପାରିଲେ, ମୁଁ ଅମାପ ସନ୍ତୋଷ ଲାଭ କରିବି ।

ରହିଲି.......

ଦଶହରା
ତା. ୨୩.୧୦.୨୦୧୫

ବିନୀତ
ନରସିଂହ ମିଶ୍ର

# ଗ୍ରନ୍ଥସୂଚି

# ମାନସ ସନ୍ତାନ

ଜୀବନ ଅଟେ ମୋର କବିତାମୟ
ନ ଲେଖିଲେ ଲେଖନୀ ହେଉନି ଥୟ,
ମୋ ଲେଖା ପାଲଟିଛି ମୋ ହଂସଧ୍ୱନି
ଥମିବ ଯେବେ ତାହା ଯିବ ହେ ଥମି
ସାରସ୍ୱତ ଯଜ୍ଞର,
ହୋଇବ ପୂର୍ଣ୍ଣାହୁତି ସେ ଉତ୍ସବର ।

ମାନସ ସନ୍ତାନେ ମୁଁ ପିତୃତ୍ୱ ଦେଇ
ସାରସ୍ୱତ ଉଦ୍ୟାନ ହସାଏ ମୁହିଁ,
କେଅଟେ ରକ୍ତ ଯବା କିଏ କିଂଶୁକ
କିଏ ବା ମଲ୍ଲୀ, ଜାଇ, ଯୂଇ, ଅଶୋକ
କିଏ ଶଙ୍ଖ ସୁନ୍ଦରୀ,
କାହିଁ ସମ୍ମୋହଭାବ ରହିଛି ଭରି ।

ଚରିତ୍ର ଚିତ୍ରଶାଳା ସୃଷ୍ଟିସମ୍ଭାର
କିଏ ଚେତନଶୀଳ କିଏ ବା ଜଡ଼,
ମାନସ ସନ୍ତାନ ମୋ' ମାନସ ପୁରେ
କରନ୍ତି କୋଳାହଳ ନିରବ ସ୍ୱରେ
ମୁଗ୍ଧ ନୟନେ ଚାହିଁ,
ରହିଥିବି ମୁଁ ଶାନ୍ତି ଲଭିବା ପାଇଁ ।

•

"କଳ୍ପନା ରାଜ୍ୟରେ କବି
ତୁମେ ଅଧୀଶ୍ୱର
ବସିଛ ବିସ୍ତାର କରି
ଅସୀମ ରାଜତ୍ୱ
ସଜୀବ ନିର୍ଜୀବ ସବୁ ତୁମର ଆୟତ୍ତ
ଯାହା ଇଚ୍ଛା କରିବାର ତୁମେ ଏକେଶ୍ୱର ।"

ଫକୀରମୋହନ

୧

# ଶବ୍ଦଧାରା

ଧ୍ୱନିମୟ ଏ' ବିଶ୍ୱ ପ୍ରକୃତି
ସହଜଲଭ୍ୟ ଏ' ନିଧି
ଜଗତର ଅଟେ ହଂସଗୀତି ।

ଧ୍ୱନିର ତରଙ୍ଗ ତୋଳେ
ଅସରନ୍ତି ଶବ୍ଦର ବୁଦ୍‌ବୁଦ୍‌,
ରୂପକଳ୍ପ ନେଇ କ୍ଷଣେ
ଭଜେ ତାହା ଅରୂପର ପଦ,
ନିତ୍ୟ କଲ୍ଲୋଳିନୀ
ଶବ୍ଦମୟୀ ତରୁଣୀ ତଟିନୀ ।

ବିଶ୍ୱର ପରମ ସୃଷ୍ଟି ଏ' ମଣିଷ ଜାତି
ଭାବମୟ, ଧ୍ୱନିମୟ ଶବ୍ଦର ବିଭୂତି
ଲଭି ସିଏ ହୋଇଛି ଚର୍ଚ୍ଚିତ,
ଶବ୍ଦ ଆଜି ବ୍ରହ୍ମରୂପେ ହୁଅନ୍ତି ପୂଜିତ ।

ମନ୍ତ୍ରଶକ୍ତି ପ୍ରଖରିତ ହୁଏ ଶବ୍ଦମଧେ
ତାହା ଯଦି ସୁଚିନ୍ତିତ ଧ୍ୱନିତ ସଶ୍ରଦ୍ଧେ,
ବିପରୀତ ହେଲେ ତା'ର ଗତି
ବିଶ୍ୱ ଜୀବନେ ଘଟାଏ ଅଶେଷ ଦୁର୍ଗତି ।

ହେ ମାନବ ଗଣ !
ସୁଧାମୟ ଶବ୍ଦ ଧାରା କରହେ ବର୍ଷଣ,
ସିକ୍ତ ହେଉ ଭାବଭୂମି ତୋଳି ତାନ ଲୟ
ହୃଦ ବିପଞ୍ଚୀରେ ତାହା ହେଉ ଧ୍ୱନିମୟ
ଏ' ବିଶ୍ୱର ମଙ୍ଗଳ ବିଧାନେ,
ମଧୁମୟ ଶବ୍ଦ ଜୟଗାନେ ।

•

୨

# ପରମ ସ୍ୱାମୀ

ନିଜର ଆତ୍ମା ସହ ମିଳନ ଯା'ର
ଅଟନ୍ତି ସିଏ ପ୍ରଭୁ ପରମେଶ୍ୱର,
ସେଇଥି ପାଇଁ ସିଏ ଅଟନ୍ତି 'ସ୍ୱାମୀ'
ଅନନ୍ତ ବ୍ରହ୍ମାଣ୍ଡର ପରମପ୍ରେମୀ ।

ସାର୍ଥକ ଅଟେ ତାଙ୍କ ସେ ସ୍ୱାମୀପଣ
ତାଙ୍କୁ ଲଭିଲେ ମନ ନ ଲୋଡ଼େ ଆନ,
ଅଟଇ ମଧୁମୟ ପ୍ରୀତି ପୀୟୂଷ
ଯେତେ ପିଇଲେ ମନ ନହୁଏ ତୋଷ ।

ଅଟଇ ଅବାରିତ ସେ ସୁଧା ଧାରା
ଶାନ୍ତିର ସୁରଧୁନୀ ଅଟଇ ପରା,
ସୁଖ ସନ୍ତୋଷ ଭରି ଦିଅନ୍ତି ପ୍ରାଣେ
'ସ୍ୱାମୀ'ଙ୍କ ପରି ଶ୍ରେୟ କେ ଅଛି ଜଣେ !

ଚିତ୍ତ ଚହଲା 'ସ୍ୱାମୀ' ଶବ୍ଦର ଧ୍ୱନି
ଅନନ୍ତ ବିହାୟସେ ନିଏ ତା' ଟାଣି,
ସେ ଶବ୍ଦ ନିର୍ଝରିଣୀ ନାଦ ନିନାଦ
ଉଲ୍ଲସେ ପ୍ରାଣ ଲଭି ପରମାନନ୍ଦ
ସେ ପ୍ରାଣପତି
ପ୍ରଭୁ ! ଅଗତି ଗତି ।

•

୩

# ସମ୍ପର୍କ

ସମ୍ପର୍କ ଅଟେ କି ସୁନ୍ଦର
ପରଶ ତା'ର କି ମଧୁର
ବଉଳେ ଚିତ୍ତ ଚୂତ ବନ
ମହକିତ ତା' ଦେହ ମନ ।

ରୂପ ଖେଳୁଥାଏ ଲୁଚକାଳି
ମତୁଆଳି ମନ ମତୁଆଳି,
ଆଖି ଚାହେଁ, ଚାହିଁ ରହିବାକୁ
ତା' ଶିରୀ ସୁଷମା ମୋହିବାକୁ ।

ପ୍ରତ୍ୟୟ ଭରା ଚୋରାବାଲି,
ପାଦ ଥାପିଦେଲେ
ଭିତରକୁ ତାହା ନିଏ ଠେଲି,
ହଜି ହଜି ଯାଏ ତା' ଭିତରେ
ଖରତରେ ଆଉ ଖରତରେ ।

ସମ୍ପର୍କ ଦିଏ ନିବିଡ଼ତା
ଭଲ ପାଇବାର ମଧୁରତା,
ବିପୁଳ ବିଭାବ ଭାବଭୂତି
ଅସ୍ତିତ୍ୱ ତହିଁ ଲିଭି ଲିଭି ଯାଏ

ବିପୁଳ ଆଲୋକେ ନିତିନିତି ।
ସମ୍ପର୍କ ଏକ ନଈ ଧାର
ସ୍ନେହର ସଲିଳ ବୁକେ ତାର,
ବହି ଚାଲି ଥାଏ ଥିରି ଥିରି
ହୋଇଲେ ଅଲୋଡ଼ା ଅପଚରା କେବେ
ସୁଖ ଯାଏ ତା'ର ମରି ମରି ।

ପଚରା ଉଚରା ଭାବ ଦିଆ ନିଆ
ଥାଏ ଯଦି
ସମ୍ପର୍କ କେବେ ପୁରୁଣା ହୁଏନି
ଆଲୋକ ବିତରେ ଯଥା ରବି ।

•

୪

# ନଦୀ

ମୁହିଁ ଏକ ନଦୀ,
ନିର୍ଝରିତ ଭେଟିବାକୁ
ବିପୁଳ ବାରିଧି ।

ଯାତ୍ରା ପଥେ ଯାହାକୁ ମୁଁ
ଭେଟେ ମୋ' ସାଥିରେ
'ଯିବକି ମୋ ସାଥେ' ବୋଲି
ତାହାକୁ ପଚାରେ,
ସିଏ ଯଦି କରେ ହଁ
କରେ ତାକୁ ସାଥୀ
ସ୍ନେହରେ ତା' ହାତଧରି
ଚାଲେ ଦିନ ରାତି ।

ମୋ ବାଟକୁ ଓଗାଳନ୍ତି
ପର୍ବତ ପାହାଡ଼
ମଣିଷ ଓଗାଳି ଥାଏ
ବାନ୍ଧି ବନ୍ଧ ବାଡ,
ମୋ ପାଣିକୁ ନିଅନ୍ତି ବଳେଇ
ସବୁଜ ବଳୟ ରଚି
ଫସଲ ଫଳେଇ ।
ଜୀବନେ ମୁଁ ବନ୍ଧନକୁ ମଣେ ନାହିଁ ଦୁଃଖ
ବନ୍ଧନେ ଦିଏ ମୁଁ ତାଙ୍କୁ ଅସରନ୍ତି ସୁଖ ।
ଦିଏ ତାଙ୍କୁ ଖାଦ୍ୟ ପେୟ

ଆଲୋକ ଶକତି
ଶିକ୍ଷା ଶିଳ୍ପ ବାଣିଜ୍ୟର
କରେ ଅଗ୍ରଗତି,
ହୁଏ ମୁହିଁ ଧନ୍ୟ
ସେବାର ଦୀକ୍ଷାରେ ମୋର
ଦୀକ୍ଷିତ ଜୀବନ ।

ଅକୃତଜ୍ଞ ଅଟେ କିନ୍ତୁ
ଏ' ମଣିଷ ଜାତି
କରନ୍ତି ଅମୃତ ସ୍ରୋତ
ବିଷେ ପରିଣତି,
ମୁଁ ହୁଏ ବିକଳ
ସେ ମଧ ମୂର୍ଚ୍ଛିତ ହୁଏ
ପାନ କରି ନିଜ ହଳାହଳ ।

•

୫

# ଅଜେୟ ଅରାତି

ଜୀବନେ, ବହୁ ଯୁଦ୍ଧ
ଭରିଛି ଅବଷାଦ
  କରିଛି ଜର୍ଜରିତ ହୃଦୟ,
ମଣିଷ ଜିତି ନାହିଁ,
ସେ ଯୁଦ୍ଧେ ହାରି ଯାଇ
  ମନ ତା' ସଦା ଭୟେ ଅଥୟ ।

ସେ ସବୁ ସୈନ୍ୟଗଣ
ବଜାଇ ବାଦ୍ୟ ରଣ
  ଆସନ୍ତି ଅସମୟେ ଅବେଳେ,
ନିଦ୍ରାରେ ଆସି ମଧ
ବଜାନ୍ତି ରଣ ବାଦ୍ୟ
  ଚାହିଁଲେ ଲୁଚିଯାନ୍ତି ସଦଳେ ।
ପରାଜୟର ପରାଭବ ସେ'
ଭୋଗନ୍ତି ନାହିଁ କେବେ ହତାଶେ ।

ସଦା ମାନବ ଜାତି
ଭୋଗୁଛି ରଣ ତାତି
  ଅଦୃଶ୍ୟ ଅରିଗଣ ତାହାକୁ,
ଆତଙ୍କେ ରଖିଛନ୍ତି
ସଂଚାରି ମନେ ଭୀତି
  ଏ ଦୁଃଖ କହିବା ବା କାହାକୁ !
ମାୟା ମୋହିତ ଲୁବ୍ଧ ତା'ମନ
ଅବଧାରିତ ଦୁଃଖ କଷଣ ।
ଆଶଙ୍କା ଜର୍ଜରିତ ହୃଦୟ
ଆଶ୍ରୟ କର ପଦ ଅଭୟ ।

●

୬

# ଘର

ଆଶ୍ରୟ ସ୍ଥଳଟିଏ ହୋଇଲା ଗଢ଼ା
କାଠ ବାଉଁଶ ଭିଡା ଛପର ନଡ଼ା,
ଝାଟି ମାଟିର କାନ୍ଥ ଦେଲି ବେଢ଼ାଇ
ଟାଟି କବାଟଟିଏ ଦେଲି ଝୁଲାଇ ।

ଗେରୁ ଗେରୁଆ ମାଟି ଲେପି ତା' ଦେହେ
କରିଲି ଲାଲ ଢ଼ାଉ ଢ଼ାଉ ମୁଁ ମୋହେ,
ପାଇଲା ପରିଚୟ ହେଲା ମୋ 'ଘର'
ଗଢ଼ା ହୋଇଲା ତହିଁ ସଂସାର ମୋର ।

ଆସିଲା ନବବଧୂ ଲାବଣ୍ୟମୟୀ
ଲକ୍ଷ୍ମୀ ରୂପରେ ଉଭା ହୋଇଲା ତହିଁ,
ବହିଲା ନଈଟିଏ ମମତା ଝରା
ସଂଚାରି ପ୍ରାଣଶକ୍ତି ପ୍ରୀତି ଉଚ୍ଛୁଳା ।

ଆସିଲେ ଆନନ୍ଦରେ ଅତିଥିଗଣ
ଶୁଭିଲା ବୃକ୍ଷଡାଳେ କଳ କୂଜନ,
ଝରିଲା ଶାନ୍ତି ସନ୍ତୋଷର ଝରଣା
ମମତା, ବିନମ୍ରତା, ଶ୍ରଦ୍ଧା, କରୁଣା ।

ଆସିଲେ ଦେବଦୂତ ପରି ମୋ ପୁରେ
ମଧୁର ଚନ୍ଦ୍ରାଲୋକେ ସଙ୍ଗୀତ ସୁରେ,
ମନ୍ଦ୍ର ମଳୟ ବାହି ବସନ୍ତ ବନେ
ଆନନ୍ଦ ସୁଧା ଧାରା ବରଷି ମନେ ।

ରଚିଲେ ଅଭିସାର ଦେବତାଗଣ
ଦେବ ଉତ୍ସବେ ମୁଖରିତ ଭବନ,
ମୋ ଘର ପାଲଟିଲା ପୂଜନ ପୀଠ
ହୋଇଲା ଚିର ସୁଖ ଶାନ୍ତି ଆସ୍ପଦ ।

ମର୍ତ୍ତ୍ୟରେ ସ୍ୱର୍ଗଟିଏ ଗଢ଼ିଲି ମୁହିଁ
ଫୁଟାଇ ପ୍ରୀତି ପାରିଜାତ ମୁଁ ତହିଁ,
ଭାବିଲି ପାଇଅଛି ମୁଁ ଇନ୍ଦ୍ରପଦ
ମୋ' ପ୍ରିୟଜନ ସବୁ ଦେବତାବୃନ୍ଦ ।

ମୋ ଘର ପାଲଟିଲା ସେ ଇନ୍ଦ୍ରପୁରୀ
ସର୍ବ ଶୋଭାରେ ତାହା ଉଠିଲା ଭରି,
ଉଜୁଡ଼ି ଗଲା ଦିନେ ସେ ଶୋଭାବନ
ଆସି ଦୁର୍ମଦ ଜରା କରିଲା ଜୀର୍ଣ୍ଣ ।

ମୁଁ ଆଜି ଜରାଗ୍ରସ୍ତ ଜୀବନ ନେଇ
ଚାହିଁଛି ଶୂନ୍ୟାକାଶେ ତା' କୋଳେ ଶୋଇ,
ବସିଛି ତହିଁ ବିଶ୍ୱ ଜୀବନ ସଭା
ନିସ୍ୱତା ଏଥି ମୋର କି ମନୋଲୋଭା
    ମୋ' ପ୍ରିୟ ଘର
    ମୋ' ସ୍ୱର୍ଗପୁର ।

•

୭

# ଅଣୁ କଣିକା

ଚାହେଁନା ଜୀବନେ ମୁଁ ଗିରି ଗରିମା
ଅଣୁକଣିକା ହୁଏ ଲଭି ଲଘିମା,
ତହିଁରେ ପରା
ଭରି ରହିଛି ବିଶ୍ୱ ବ୍ରହ୍ମାଣ୍ଡ ସାରା ।

ଯେ ଯେତେ ହୁଏ ଉଚ୍ଚ ଗରିମା ବଳେ
ବିରୋଧ ବାତ୍ୟା ଚେର ମୂଳ ଉପାଡେ
ନିମିଷ କରେ
ସେ ହୁଏ ଧରାଶାୟୀ ବାଲୁକାପରେ ।

ନଥାଏ ଦୁଃଖ, କ୍ଷୁଦ୍ର କଣିକା ବୋଲି
ମୁଁ ବିଶ୍ୱ ପ୍ରତିନିଧି ମୁଁ ଶୂନ୍ୟଚାରୀ
ଘୂରେ ନିର୍ଭୟେ
କ୍ଷୁଦ୍ର ହୋଇବି, ଦୀର୍ଘ ଉର୍ଦ୍ଧ୍ୱ ବଳୟେ ।

ଅଛୁଆଁ ଆକାଶକୁ ମୁଁ ପାରେ ଛୁଇଁ
ପ୍ରବଳ ବାୟୁ ପୃଷ୍ଠେ ସବାର ହୋଇ,
ପ୍ରାଣ କଣିକା ରୂପେ ଶରୀରେ ବିଜେ
ସ୍ନେହ କଣିକା ରୂପେ ହୃଦୟେ ରାଜେ
ମୁଁ ସିନା ସାନ,
ମହିରେ ହୋଇଅଛି ମୁଁ ମହୀୟାନ ।

ହେ ପ୍ରଭୁ ! ତୁମ ପଦେ ଏତିକି ଅଳି
ରଖିଥାଅ ହେ ଅଣୁ କଣିକା କରି,
ସାନରେ ମାନ
ଭରିଛ ଏତେ, କରିଅଛ ମହାନ ।।

•

୮

# ପ୍ରବାସୀ ପ୍ରିୟ

ଆସ ହେ ଆସ ପ୍ରବାସୀ ପ୍ରିୟ ମୋର !
ତୁମରି କୋଳେ
ମତ୍ତ ଭୋଳେ
ଚାହେଁ ମୁଁ ହଜି ଯିବାକୁ ବାରବାର,
ଶାନ୍ତି ଟିକେ ପାଇଁ
ଆସହେ ପ୍ରିୟ କରନା ନାହିଁ ନାହିଁ ।

ଆସିବ ବୋଲି ଅନ୍ଧକାରେ
କରିଛି ନିମନ୍ତ୍ରଣ,
ନିର୍ଜନତା ବରିଛି ମୁହିଁ
ଭରିଛି ମନ ହୃଦୟ ଦେଇ,
ଆସିବ ବୋଲି ଯାଇଛ କହି
ରଚିବା ପାଇଁ ପୀରତି ପୂଜାୟନ;
ଆସିବ ସତେ ସଖା !
କ୍ଷଣକ ପାଇଁ ଏକାନ୍ତରେ
ଦେବ କି ଥରେ ଦେଖା !!

ମୁଁ ପରା, ପତି ପୀରତି ପାଗଳିନୀ
ମୁଁ ପରା ତୁମ ସୁରଭି ସୁହାଗିନୀ,
ଆସ ହେ ଥରେ ପରାଣ ପତି ମମ !
ଦେଖିବି ବୋଲି ଆତୁର ମୁହିଁ
ଶ୍ରୀମୁଖ ଶୋଭା ତୁମ ।

ଭକତି ରସେ ଭରିଛି ଦୀପାବଳି
ଆସ ହେ ପ୍ରଭୁ ତୁମରି ନାମ
କରିଛି ଜପାମାଳି,
ହେ ଭାବ ବିନୋଦିଆ !
ମୁଁ ପରା ତୁମ ମାନିନୀ ପ୍ରାଣପ୍ରିୟା ।

ଦେଖୁଛି ତୁମ ରୂପକୁ ସଖା !
ସପନେ ଜାଗରଣେ
ହୋଇଛି ଠିଆ, ମୁଁ ଏକୁଟିଆ
କାହାକୁ ତୁମେ
ଖୋଜୁଛ ମନେ ମନେ ।

ମୋ' ରୂପଛବି ଦେଖୁନ କ'ଣ ତହିଁ
ନୟନୁ ମୋର ଝରୁଛି ଯେଉଁ
ଶ୍ରାବଣ ଭରାନଈ ।
ଆସ ହେ ସଖା ! ନେବି ମୁଁ ବୁକୁପାତି
ମମତା ମେଘେ ଲିଭାଇ ଦେବି
ବୈଶାଖର ତାତି
ବୈଶାଖୀର ତାତି ।

•

୯

# କାମନାର ମୁଁ ମଳୟ ଦୂତ

କାମନାର ଅରଣ୍ୟରେ
ଶୁଭେ ନିତି ବାଘର ହେଣ୍ଟାଳ
କେତେ ହିଂସ୍ର ପଶୁପକ୍ଷୀ
କରୁଥାନ୍ତି ତହିଁ ହଟଗୋଳ
ଚିହ୍ନା ଚିହ୍ନା ଅଟନ୍ତି ସେମାନେ,
ରହିଛନ୍ତି ଏ' ବନରେ
ଆନନ୍ଦରେ, ବଂଶ ଅନୁକ୍ରମେ ।

ମୋ ମନର ଘଞ୍ଚବନେ
ଶୁଭେ ସଦା କ୍ରୋଧିତ ଗର୍ଜନ
ମୁଁ ପଶି ପାରେନା ତହିଁ
ଅବିରତ ଭୟାତୁର ମନ ।

ଦୟା କ୍ଷମା, ସ୍ନେହ, ଶ୍ରଦ୍ଧା
ପ୍ରେମାସ୍ପଦ ସୁଗୁଣ ସମୂହ
ମୁନିଜନ ସମ ତହିଁ
ତପୋମଗ୍ନ ଥାନ୍ତି ଅହରହ
ଶଙ୍କାକୁଳ ଅଟନ୍ତି ସେମାନେ,
ଜର୍ଜରିତ, ପିଶାଚର
ଆକସ୍ମିକ ଦୃପ୍ତ ଆକ୍ରମଣେ ।

ତଥାପି ସେ ଅରଣ୍ୟର ଶ୍ୟାମଶିରୀ ଶୋଭା
ମୋ ମନ  ନୟନ ପାଇଁ ନିତ୍ୟ ମନଲୋଭା,
ତା' ତଟିନୀ କୁଳୁ କୁଳୁ ତାନ
ଚୂତ ବନ କୋକିଳ କୂଜନ
କରେ ସମ୍ମୋହିତ,
କାମନାର ମୁଁ ମଳୟ ଦୂତ ।

•

୧୦

# ସେ ଯବା ଯୁବତୀ

ରୂପବତୀ ପୁଷ୍ପବତୀ ସେ ଯବା ଯୁବତୀ,
ଫୁଟିଅଛି ବୃନ୍ତେ ତା'ର
ଆନନ୍ଦେ ହୋଇ ବିଭୋର
ଭରି ବୁକେ ବହୁ ରଙ୍ଗ ଲାବଣ୍ୟ ବିଭୂତି
ସୌନ୍ଦର୍ଯ୍ୟ ମଣ୍ଡିତା
ସେ ରୂପ ଗର୍ବୀତା ।

କହୁଅଛି ସ୍ପର୍ଦ୍ଧାଭରେ, "ହେ ମଣିଷ ଶୁଣ !
ମୋର ସ୍ପର୍ଶ ବିନା ତୁମ ଦେବତା ପାଷାଣ,
ମଣ୍ଡି ଦେଲେ ତା' ଗଳାରେ ଗୁନ୍ଥି ପୁଷ୍ପମାଳ,
ଦେବତ୍ୱ ଲଭେ ପାଷାଣ, ଆନନ୍ଦେ ଉଚ୍ଛଳ ।
ଦେବତାର ହୁଏ ଅଭିଷେକ
ମୋ' ପଣତ ତଳେ,
ପାଷାଣ ଦେବତ୍ୱ ପାଏ ମୋ' ଶୁଦ୍ଧତା ବଳେ,
ନାନା ପୁଷ୍ପେ ହେଇଲେ ମଣ୍ଡିତ
ଦେବ ରୂପେ ହୋଇଥାନ୍ତି ଦେବତା ଅର୍ଚ୍ଚିତ ।

ପରିଣତ ହୁଏ ପୁଷ୍ପ, ଭକ୍ତି ସୁମନରେ
ଭକ୍ତି ସଂଜୀବନୀ ସଦା, ତା' ମଧ୍ୟରେ ଝରେ
ସେ ହୁଏ ମହାନ୍
ଦେବତ୍ୱର କରେ ଜୟଗାନ ।"

ହେ ଦେବତା ! ତୁମ ପାଶେ କରୁଅଛି ଅଳି,
ମଣିଷ ଭକ୍ତି ଭାବ ଊର୍ଦ୍ଧ୍ୱଗତି କରି
ନ ଉଜାଡୁ ପ୍ରକୃତିର ପୁଣ୍ୟ ପୁଷ୍ପବନ
ଭକ୍ତିଆଳେ ତୁମ ନାମେ ନକରୁ ଲୁଣ୍ଠନ
ପ୍ରକୃତିର ପୂଜା ଅର୍ଘ୍ୟଥାଳି ।
ଏଇ ମୋର ଅଳି ।

ଏ' ମଣିଷ ମନଟିକୁ କରିଦିଅ ଫୁଲ
ତା' ମଧ୍ୟରେ ଭରିଦିଅ ସୁବାସ ଅତୁଳ,
ସୁଗୁଣ ସୌରଭେ ତାହା ହେଉ ମହକିତ
ଭବ୍ୟ ଭାବନାରେ ତାହା ହେଉ ସୁବାସିତ
ପୁଷ୍ପମୟୀ ଏ' ବନ ପ୍ରକୃତି
ସ୍ରଷ୍ଟାର ସ୍ତବନେ ରତ ସେତ ଦିନରାତି ।
ଆହେ ବନ୍ଧୁ !
ପୁଷ୍ପଟିକୁ ଛାଡ଼ିଦିଅ ବୃନ୍ତେ
ଅଭିପ୍ରେତ ସ୍ରଷ୍ଟାଙ୍କର ପୂଜନ ନିମନ୍ତେ ।

•

୧୧

# ମହାଭିକ୍ଷା

ସନ୍ନ୍ୟାସୀଙ୍କୁ ଦିଅ ଭିକ୍ଷା, ଦିଅ ଗୋ ଜନନୀ !
ମହାର୍ହ ଧନ ସମ୍ପତ୍ତି ମୁଁ କିଛି ମାଗୁନି,
ବୁଲି ବୁଲି ମହାଭିକ୍ଷା ମାଗୁଛି ମହିରେ
ଭିକ୍ଷାଥାଳ ପୂର୍ଣ୍ଣକର ମନ ଆନନ୍ଦରେ
ମାଗେ ମା'ଗୋ ! ଏତିକି ତୁମକୁ,
"ସୁ ସନ୍ତାନଟିଏ ଦିଅ,
ଏ' ବିଧ୍ୱସ୍ତ ବିଶ୍ୱ ଗଢ଼ିବାକୁ ।"

'ମାନବିକତାର ଦୀକ୍ଷା,' ଦିଅ ଗୋ ତାହାରେ
ଯାହାଅଟେ ଏ ସନ୍ନ୍ୟାସୀ ଶକ୍ତିର ବାହାରେ,
ସେବାମନ୍ତ୍ର ଶିଖାଅ ତାହାକୁ
ସଂସାର ଦୁଃଖ କଷଣ ଦୂର କରିବାକୁ
ହେଉ ସିଏ ମହାବ୍ରତଚାରୀ,
ଢ଼ାଳୁ ପ୍ରାଣେ ଶ୍ରଦ୍ଧା ସେବା ମମତାର ବାରି ।"

ଅତିଥିଙ୍କ ସମ୍ଭାଷଣ ପାଇଁ,
ଏକ ଭକ୍ତିମୟୀ
ଉଭା ହେଲେ ସନ୍ନ୍ୟାସୀଙ୍କ ସମ୍ମୁଖରେ ଆସି
ସତେ ଅବା ଜ୍ୟୋତିର୍ମୟୀ ପୂର୍ଣ୍ଣିମାର ଶଶି ।

ନମିତ ନୟନେ
ନମ୍ରକଣ୍ଠେ କହିଲେ ସଧୀରେ,
"ମୁଁ ସିନା ଦେଇଛି ଜନ୍ମ, ପାରିବିକି ଭାଗ୍ୟ ଦେଇ ତାରେ !
ଦିଅ ତାକୁ ଆଶୀର୍ବାଦ ତବ
"କର୍ମ ଯୋଗୀ ଭବ"
ମାନବ ବାଦର ସିଏ ଜୟଗାନ କରି
ଧନ୍ୟ ହେଉ, ଅତିଥିଙ୍କ ଭାବ ଭିକ୍ଷା ଭରି ।

ଆଶୀର୍ବାଦ ମୁଦ୍ରାଟୋଳି, କହିଲେ ସନ୍ନ୍ୟାସୀ
'ତୁମର ସନ୍ତାନ ମା' ଗୋ ! ହେଉ 'ତତ୍ତ୍ୱମସି'
ମୋ ଯାଚନା ହୋଇବ ପୂରଣ,
ମାନବିକତାର ହେବ ଭବ୍ୟ ଉତ୍ତରଣ ।

'ତତ୍ତ୍ୱମସି': ଜୀବାତ୍ମା ଓ ପରମାତ୍ମା ମଧ୍ୟରେ ଅଭେଦ କଳ୍ପନା ।

•

୧୨

# ଅଧ ଓ ଉର୍ଦ୍ଧ୍ୱ

ବିଶ୍ୱମଣ୍ଡଳ.....ମହାବିଶ୍ୱମଣ୍ଡଳ
ବନ୍ଧୁତା ଉଭୟଙ୍କ ଅଟେ ଅତୁଳ,
ରହନ୍ତି ନାହିଁ ଜଣେ ଜଣକୁ ଛାଡି
ପ୍ରୀତି କୁସୁମ ଭରା ବନ୍ଧୁତା ବାଡ଼ି ।

ତାଙ୍କରି ପରି ବନ୍ଧୁ ନିବିଡ଼ତର
ଆତ୍ମା ହୃଦୟ ପ୍ରୀତି କି ମନୋହର,
ଜାଗ୍ରତ ହେଲେ ତୀବ୍ର ଆକାଂକ୍ଷା ତହିଁ
ଉଦ୍‌ବେଳେ ଚୁମ୍ବକୀୟ ତରଙ୍ଗ ନଇ ।

ବିଦ୍ୟୁତ୍ ଶକ୍ତି ସମ ତା' ଶକ୍ତଶାଳୀ
ନିଶି ନିଦ୍ରାରେ ମହାକାଶେ ତା' ଚଳି,
ହୁଅଇ ସଂଚାରିତ ନଭୋମଣ୍ଡଳେ
ଶକ୍ତି ଆହରି ଫେରେ ପ୍ରାତକାଳରେ ।

ଚେତନା ବଳୟରେ କରେ ପ୍ରବେଶ
ମହି ମଣ୍ଡଳେ ଘୂରେ ହୋଇ ହରଷ,
ଉର୍ଦ୍ଧ୍ୱରୁ ଆହରିତ ଶକ୍ତି ସକଳ
କାମନା ଚିତ୍ର କକ୍ଷ କରେ ସଫଳ
    ଏ' ମହା ସତ୍ୟ,
ହୋଇଛି କାଳେ କାଳେ ତା' ପ୍ରକଟିତ ।

•

୧୩

# ଗତାୟୁ ନଈ

ହାରିବା ହରାଇବା ପର୍ବକୁ ପାଳି
ଜୀବନେ ସବୁ ଦୁଃଖ ଦେଇଚି ଟାଳି,
ଗଲାଣି ଲିଭି, ଲାଭ ଲୋଭର ଆଶା
ହଜିଗଲାଣି ମନୁ ଭାବ ଭରସା
ତଥାପି ମୁହିଁ,
ଚାଲିଛି ଲକ୍ଷ୍ୟ ପଥେ ଗତାୟୁ ନଈ ।

ପ୍ରବାହ ମୋର ଧୀର ମନ୍ଥର ଆଜି
ହଜିଛି ଯୌବନର ସେ ଶୋଭା ରାଜି,
କେଉଁଠି ସ୍ରୋତ ମୋର ଅନ୍ତଃ ସଲିଳା
ଲମ୍ବିଛି ଦୀର୍ଘପଥ ବାଲୁକା ବେଳା
ମୁଁ ଠାଏ ଠାଏ,
ମୁଗ୍ଧ ଜୀବନ ମଧୁ ସଙ୍ଗୀତ ଗାଏ ।

ଆସନ୍ତି ଗ୍ରାମ୍ୟ ବଧୂ କିଶୋରୀ ଗଣ
ଶୁଭଇ ହାତ କାଚ ଅନୁରଣନ,
ସ୍ଫର୍ଦ୍ଧିତ ଯୌବନର ଉଡାଇ ବାନା
ମନ୍ଥରେ ଚାଲି ଥାନ୍ତି ଏଣୀ ନୟନା
ଖୋଳନ୍ତି ଚୂଆ,
ବାଲି ବୁକୁରେ, କଟି କଳସୀ ଥୁଆ ।

ଆସନ୍ତି ଗାଁ ଗାଈ ଗୋରୁ ସକଳ
ବନର ପଶୁପକ୍ଷୀ ଶୋଷେ ବିକଳ,
ଖୋଜନ୍ତି କ୍ଷୀଣ ଧାର ବହୁଛି କାହିଁ
ପିଅନ୍ତି ପାଇଗଲେ ଆନନ୍ଦ ହୋଇ
ଆନନ୍ଦ ମନ,
ଭୁଲେ ହାରିବା ହରାଇବା କଷଣ ।

•

୧୪

# ନବବର୍ଷ

ବର୍ଷ ନବ ହର୍ଷ ତବ
ବାଣ୍ଟି ଦିଅ
ଆଜି ଏ' ମଧୁ ଲଗନେ,
ଏ' ଭୁବନେ, ଭବନେ ହେ ଭବନେ ।

ଉଲ୍ଲସିତ ସବୁରି ମନ
ଆନନ୍ଦରେ ଉତ୍ତାଳ ଘନ
ଲଳିତ ଲୀଳା ଲହରି,
ପରଶ ପାଇ ଉଠୁ ଏ' ପ୍ରାଣ ଶିହରି ।

ବିପୁଳ ଏଇ ବ୍ୟାପ୍ତ ବିହାୟସ
ଜଗତ ଜୀବ ଯନ୍ତ୍ରଣାର ପ୍ରାସ -
ଅଶାନ୍ତ ତା' ସ୍ନିଗ୍ଧ ନୀଳବୀଚି,
ଶାନ୍ତ କର ହେ ନବବର୍ଷ
ଶରଧା ସୁଧା ଶୀକର କଣା ସିଞ୍ଚି ।

ବର୍ଷନବ ହର୍ଷ ତବ ବୁଣି
ତୋଳ ହେ ସୁଧା ସଙ୍ଗୀତର ଧ୍ୱନି,
ମମତା ମଖା ମଳୟ ବହୁ
ପରାଣ ପୁରେ ପୁରେ
ହୃଦୟ ଆମ ଉଚ୍ଛୁଳି ଉଠୁ
ମଧୁର ସୁରେ ସୁରେ ।

ବିଶ୍ୱମନ କୁସୁମ ବନ
ମହକ ବାହି ବାହି
ଶାନ୍ତିସୁଧା ମଳୟ ବହୁ
ପ୍ରୀତିର ଗୀତ ଗାଇ,
ଜୀବନ ହେଉ ଧନ୍ୟ
ନାହିଁ ତ କିଛି ମାଗୁଣି ଆମ ଅନ୍ୟ ।

•

## ୧୫

# ଆକାଂକ୍ଷା

ଚାହେଁନି ସାଧୁତ୍ୱରେ ହେବାକୁ ମୂକ
ପାଣ୍ଡିତ୍ୟରେ ହେବାକୁ ପ୍ରଗଲ୍‌ଭ ଏକ,
ହେବାକୁ ଭ୍ରାନ୍ତ ଭାବ ଭୂମିରେ ଭ୍ରମି
କେବଳ ଚାହେଁ ଶାନ୍ତି ପଥାନୁଗାମୀ ।

ଅଗଭୀର ମନର ପୋଖରୀ ଜଳେ
ହେବାକୁ ଫର ଫର ସଫରୀ ତୁଲେ -
ଚାହେଁନି ମନ, ଚାହେଁ ହେବାକୁ ତିମି
ଗଭୀର ଗର୍ଭେ ମହା ସାଗରେ ଭ୍ରମି ।

ଚାହେଁନି ତୋଳିବାକୁ କମ୍ପନ ପ୍ରାଣେ
ପାଇବା ପାଇଁ ଟିକେ ଶାନ୍ତି ଜୀବନେ,
'ଅହଂ' ଭାବର ରୁକ୍ଷ ପାଷାଣ ଭେଦି,
ହେବକି ପ୍ରବାହିତ ଶାନ୍ତିର ନଦୀ !

ବୈରାଗ୍ୟ ବିଭୂତି ମୁଁ ଲେପି ମୋ ମନେ
ଚାହେଁ ନି ଭ୍ରମିବାକୁ ମୁଁ ବନେ ବନେ,
ମୁଁ ଚାହେଁ ଏ' ସଂସାର, ଏ' ଭୋଗ ଭୂମି,
ଶାନ୍ତିର ସୁଲଳିତ ଚିବୁକ ଚୁମି ।

ମୋ ଦମ୍ଭ ଅଭିମାନ ଚୂରିଲେ ଚୂର
ତହିଁରେ ଗଢ଼ ନୂଆ ମୂର୍ତ୍ତିଟି ମୋର,
ତା' ହେଉ, ସଦା ପ୍ରଭୁ ଚରଣାଶ୍ରିତ
ସମର୍ପଣ ଭାବର ସୁଧା ସଙ୍ଗୀତ -
ତା କଣ୍ଠ ଝରୁ,
ସବୁଜିମାରେ ହସୁ ତା' ମନ ତରୁ ।

•

୧୬

# ସ୍ୱେଚ୍ଛାଚାରୀ

ଏ' ସୃଷ୍ଟିର ସାଇଁ,
ବସାଇଲେ ଶ୍ରେଷ୍ଠପଦେ
ମଣିଷକୁ ନେଇ ।
ଦେଲେ ପ୍ରଭୁ ଦୀକ୍ଷା
"ବିଶ୍ୱ ମଙ୍ଗଳ ବିଧାନେ
ରହିବାକୁ ସଦା ଧ୍ୟାନେ
ଏ ଜଗତ କରିବାକୁ ରକ୍ଷା ।"
ନିଜ ଶକ୍ତିବଳେ
ଏ' ମଣିଷ ଦୁର୍ଜ୍ଜୟ ଭୂତଳେ ।

ପାଇଲା ସେ ଉଚ୍ଚପଦ
ଅଧିକାରୀ ହେଲା ବିପୁଳତା
ଲଭିଲା କ୍ଷମତା,
ଏ' ଧରାକୁ ସେ ମଣିଲା ସରା
ସେ ପ୍ରମତ୍ତେ ହୋଇଲା ଉତ୍ତଳା ।
ବାରଣ, ନୀତି ନିୟମ କରିଲା ଲଙ୍ଘନ,
ହେଲା ସେ ଉନ୍ମନ
ହେଲା ସ୍ୱେଚ୍ଛାଚାରୀ,
ସଦ୍‌ଗୁଣ ବୁଦ୍ଧି ବିବେକ ଗଲା ତା' ମଉଳି ।

ଠାକୁରଙ୍କ ନାମଧରି
ଆରମ୍ଭିଲା ଉତ୍ପାତ୍ ତାହାର,
ପ୍ରଥମେ ଉଜାଡି ଦେଲା
ଶୋଭାମୟୀ ଏ ପ୍ରକୃତି ପୁର ।

ସୌନ୍ଦର୍ଯ୍ୟ କାନନ
ତା'ର ପୁଷ୍ପବନ ।
ତା' ଉଦ୍ଭିଦ ପଶୁପକ୍ଷୀ ଶ୍ୟାମ ବନଭୂମି
ସବୁ ହେଲା ନାଶ,
ତା' ରାକ୍ଷସି କ୍ଷୁଧା କଲା ଗ୍ରାସ ।

ଈଶ୍ୱରଙ୍କ ଅନ୍ୟରୂପ ଅଟଇ ପ୍ରକୃତି
ଏ'କଥା ବୁଝିଲା ନାହିଁ ମୂଢ଼ ଅବିବେକୀ
ଏ' ମନୁଷ୍ୟ ଜାତି ।

ନଦୀ ହ୍ରଦ ସମୁଦ୍ରର ଅମୃତ ଭଣ୍ଡାରେ
ଭରିଛି ବିଷ କଣିକା ନିତି ଉନ୍ମାଦରେ
ଗଗନେ ପବନେ,
ଗ୍ରହ ଗ୍ରହାନ୍ତରେ ।

ଶାନ୍ତିର ବଳୟ ଭେଦି
ବିଷଜ୍ୱାଳା ବୁଣେ ନିରନ୍ତର,
ମଣିଷ ହୃଦୟ ଆଜି ଘୃଣାରେ ଜର୍ଜର
ଜାତି, ଧର୍ମ, ନୀତି ନାମେ
ବିଦ୍ୱେଷ ଆଚରି,
ସଂହାର ରଚିଛି ଆଜି ସେ'ତ ସ୍ୱେଚ୍ଛାଚାରୀ ।
ବାକି ଅଛି ଯାହା
ଲାଗିଅଛି କରିବାକୁ ସ୍ୱାହା ।

•

୧୭

# ତୁମରି ଗୀତ ଗାନେ

ମାଗୁନି ପ୍ରଭୁ ଶାନ୍ତି ସୁଖ
ବିପୁଳ ବଇଭବ
ଦିଅ ହେ ଯଦି ଦେବ,
ସହିବାଶକ୍ତି, ଦୁଃଖ ପରାଭବ ।

ପାତୁଛି ହାତ ମାଗିବା ପାଇଁ
ଆନନ୍ଦ ଟିକେ ଖାଲି
ଜାଣିଛି ତାହା ରହିବ ନାହିଁ
ଅଟଇ ଚୋରା ବାଲି ।
କିଏ ବା ଅଟେ ଚିର ?
ଆସିବା, ଯିବା ଲାଗିଛି ନିରନ୍ତର ।

ଦେଇଛ ଯାହା, ଯଥେଷ୍ଟ ତାହା
ପାର୍ଥିବ ସୁଖ ପାଇଁ
ହେବିନି ଆଉ ବାଇ,
ଆହେ ଜଗତ ସାଇଁ !
ଇନ୍ଦ୍ରିୟଗଣ ତୃପ୍ତ ମୋର
ସକଳ ସୁଖ ପାଇ,
ପ୍ରଭୁ ସକଳ ସୁଖ ପାଇ ।

ସେ ସୁଖ ପାଇ ବହୁଛି ଆଜି
ମୋ' ମନ ଉପବନେ,
ମଳୟ ସନ ସନେ
'ଶାନ୍ତି' ସୁଧା ପାନେ ।

ମୋ' ମନ ପ୍ରଭୁ ଉଚ୍ଚଟିତ
ତୁମରି ଗୀତ ଗାନେ
ପ୍ରଭୁ ! ତୁମରି ଗୀତଗାନେ !
ତୁମରି ଦାନେ, ଏ' ଦେହ ମନ
ଭରିଲେ ତାଙ୍କ ଥାଳ,
'ଆତ୍ମା' ଆଜି ବିକଳ ମୋର
ଗଭୀର ତୃଷାତୁର ।
ଆନନ୍ଦର କରୁଣା ବାରି
ଦିଅ ତା' ମୁଖେ ଢ଼ାଳି
ତୃଷାର୍ତ୍ତ ଏ' ପଥିକ ଯିବ
ଦୀର୍ଘ ପଥ ଚାଲି ।

ସେ ଚାହେଁ ପରା ପରମ ଗତି
ପରମ ପଦ ଲାଭ,
ପରମ ପତି ପରମାତ୍ମାରେ
ମିଶିବା ମହୋତ୍ସବ ।
ତୃଷା କି ତା'ର ହୋଇବ ନିବାରିତ
ପ୍ରଭୁ !
ସେ ମନ ଭରି ଗାଉଛି ତୁମ ଗୀତ ।
ପ୍ରଭୁ ଗାଉଛି ତୁମ ଗୀତ !!

•

୧୮

# ହଜିଲା ପିଲାଦିନ

"ଆସନ୍ତା ଯଦି ଜୀବନେ ଫେରି
ହଜିଲା ପିଲାଦିନ,
ଆନନ୍ଦେ ତା'ର ଚିବୁକ ଚାରୁ
ଚୁମନ୍ତି ଘନ ଘନ ।

କହନ୍ତି ତାକୁ, "ହେ ପ୍ରିୟ ସଖା
ଯାଆନି ଫେରି ଆଉ,
ସହୁଛି ଦୁଖେ, ତୁମରି ପରି
ବନ୍ଧୁ ଥାଉ ଥାଉ ।

ତମରି ପ୍ରୀତି କାଉଁରୀକାଠି
ସେନେହ ପରଶରେ
ଲିଭାଅ ମମ ବେଦନା ଅଶ୍ରୁ
ନୟନୁ ନିତି ଝରେ ।
ତୁମକୁ ଛାଡ଼ି ମୁଁ ଆଜି ସାଥିହରା
ସବୁଠୁ ପ୍ରିୟ ମୋ' ସାଥୀ ତୁମେ ପରା ।"

କହିଲା ପିଲା ଦିନ
"ଯାଇନି କାହିଁ ଯାଇନି କାହିଁ
ପାଖରେ ଅଛି ତୁମ,
ଆଡ଼େଇ ଦେଲ ବୋଲି ବହିଛି
ମନରେ ଅଭିମାନ ।

ବିପୁଳ ଯଉବନକୁ ତୁମେ
କରିଲ ବୋଲି ସାଥୀ
ତା' ପାଶେ ତୁମେ ଅଟକି ଗଲ
ଝୁରେ ଏ' ସାଥୀ ଏଥି ।
ସେ ସାଥୀ ସାଥେ, ହୋଇଲ ମତୁଆଲା
ଡାକିଲ ନାହିଁ, ଚାହିଁଲ ନାହିଁ
ଜୀବନେ ଥରେ ଲୋଡ଼ିଲ ନାହିଁ,
ହେଲି ମୁଁ ଅପଚରା !

ପ୍ରକୃତିର କୁସୁମ ବନେ
ମୁଁ ଆଜି ପ୍ରଜାପତି
ଆସିବ ଯଦି ଆସ ହେ ସଖା !
ଖେଳରେ ଯିବା ମାତି ।

ଉଡ଼ିବା ବନେ ଆନନ୍ଦ ମନେ
ପବନେ ପକ୍ଷୀ ସମ,
ପୀରତି ପୁଣି ହୋଇବ ଯୋଡ଼ା
ବନ୍ଧୁ ! ତୁମ....ଆମ ।
ଗଗନ ବୁକେ ହଜିଛି ମୁହିଁ
ନୀଳିମା ତା'ର ହୋଇ
ଆସୁନ ଏଥି ହୋଇବା ସାଥୀ
ନାଚିବା ଥେଇ ଥେଇ ।

ସରଗ ପୁରୀ, ପରୀ କୁଆଁରୀ
ଦେବତା ଶିଶୁ ଗଣ,
ଆସିବେ ଏଥି ଆମରି ସାଥେ
ଖେଳିବେ ଜଣଜଣ,
ହୋଇବ କେଡେ ମଜା
ଆସହେ ସଖା ! ଆସହେ ବନ୍ଧୁହଜା
ଆସହେ ବନ୍ଧୁହଜା !।

•

୧୯

# ବୁଦ୍ଧିବାଦୀ

କରନା ମୋତେ, କରନା ପ୍ରଭୁ !
ବୁଦ୍ଧିବାଦୀ ମଣିଷଟିଏ
ତର୍କଣାରେ କଟେ ଯା' କାଳ
ତରଙ୍ଗ ତୋଳି ଯେ ଲୋଟୁଥାଏ ।

ମୋ ବୁଦ୍ଧି ମୋତେ ନକରୁ ଅନ୍ଧ
ଗର୍ବ ମତ୍ତ ମଦିରା ପିଇ
ଆଲୋକ ଭରୁ ହୃଦୟେ ମମ
ଅନ୍ଧକାର ପରଦା ଫେଇ ।

ଭାବ ମନ୍ଦିର ଭଗ୍ନ ମୋର
ଦିଅ ହେ ଏକ ମଗ୍ନମନ
ଲୟରେ ବସି ସଜାଡି ଦିଏ
ତା' ଶିରୀ ଶୋଭା ଉଜୁଡ଼ା ବନ ।

ଧ୍ୟାନରେ ଧ୍ୟାୟୀ ତୁମରି ପଦ
ନିର୍ନିମେଷେ ରହିବି ଚାହିଁ
ଆନନ୍ଦ ମନେ ଶ୍ରୀମୁଖ ତବ
ହେ ପ୍ରାଣପ୍ରିୟ ପରାଣସାଇଁ !

ଭକତି ଭରା ସୁମନ ଡାଲା
ଅରପି ଦେବି ପୟରେ ତୁମ
ଲୋତକ ଭରା ଜୀବନ ପାତ୍ର
କରିବି ପଦେ ସମର୍ପଣ ।
ସେତିକି ପାଇଁ କରୁଛି ପ୍ରଭୁ ଅଳି
ପୂରାଅ ମୋର ପୂରାଅ ଭିକ୍ଷାଥାଳି ।

•

୨୦

# କର୍ମଯୋଗ

ନିଭୃତ ଗିରିଗୁମ୍ଫା ଅରଣ୍ୟ ବାସ
ଗୈରିକ ବସନ ବା ମୁଣ୍ଡିତ କେଶ,
ଅଥବା ଜଟା କୂଟ ଶ୍ମଶ୍ରୁ ସମ୍ଭାର
ଭସ୍ମ ଲେପିତ ବପୁ ରୁଦ୍ରାକ୍ଷ ମାଳ,
ବୈରାଗ୍ୟବାସ,
କରି ପାରନା କା'ରେ ତ୍ୟାଗୀ, ତାପସ ।

ପଳିତ ପତ୍ର ଯଥା ଉଡ଼ଇ ବାତେ
ଉଡ଼ଇ ମନ ତଥା ଭୋଗ ଜଗତେ,
ଅସ୍ଥିର ନିରନ୍ତର, ହୁଅଇ ଚିତ୍ତ
ଜୀବନେ ଶାନ୍ତି ସୁଖ ଦିଏ ନି ବିତ୍ତ
ବିକଳ ମନ,
ସର୍ବଦା ଆନ୍ଦୋଳିତ ସଂସାରୀ ଗଣ ।

ବୈରାଗୀ ଯୋଗୀ ଆଉ ସନ୍ନ୍ୟାସୀ ହୋଇ
କି ଲାଭ ମିଳେ ତ୍ୟାଗ ଦୀକ୍ଷାକୁ ନେଇ,
ଯଦି ଅସ୍ଥିର ମନ,
ନୁହେଁ ତା' ସାଧନା ଓ ସିଦ୍ଧ ସୋପାନ ।

କର୍ମ ଯୋଗୀର ପଥ ଅଟେ ସରଳ
ଚିତ୍ତ ଚାଞ୍ଚଲ୍ୟ ତାହା କରଇ ଦୂର,
ଡୋଳେ ତା' ଅଭିସାର ସେ ଦିବ୍ୟ ଲୋକେ
ପ୍ରେମିକ ପୁରୁଷ ତା' ପ୍ରେମ ପୁଲକେ
ପ୍ରୀତି ପ୍ରଣୟ ପୁରେ,
ଭେଟନ୍ତି ପ୍ରେମଭରେ କର୍ମ ଯୋଗୀରେ
ହୁଏ ସେ ମଗ୍ନ
ଜୀବନ ହୋଇଯାଏ ତାହାର ଧନ୍ୟ ।

•

୨୧

# ପୂର୍ଣ୍ଣିମା ତୁମେ ଆସିଲ କିଆଁ ?

ରଙ୍କର ଏଇ ପର୍ଣ୍ଣ କୁଟୀରେ
ପୂର୍ଣ୍ଣିମା ତୁମେ ଆସିଲ କିଆଁ ?
ଦୈନ୍ୟଭରା ତା' ଶୂନ୍ୟପୁରୀର
ବୁକେ ଜଳେ, ହା ହୁତାଶ ନିଆଁ ।

ଅନ୍ଧାର ତା'ର ଚିର ସହଚର
ଅମାବାସ୍ୟା ତା' ପରମସାଥୀ,
ମନ ଅଙ୍ଗନ ଅନ୍ଧାର ଘନ
କୃଷ୍ଣ କାଳିମା ବୋଳା ତା' ରାତି ।

କଣ୍ଠ କାକଳି ଯାଇଛି ମଉଳି
ଉଷ୍ମ ତାହାର ଅଶ୍ରୁ ରାଗେ,
ତଥାପି କାମନା କମ୍ବୁ ବାଜଇ
ଅନ୍ଧାର ତା'ର ଦେଉଳ ଭାଗେ ।

ଗନ୍ଧ ଗୁଗୁଳ ଧୂପ ଚନ୍ଦନ
ବନ୍ଦନହୀନ ଦେବତା ପାଶେ
ମିନତି ମଥିତ ବ୍ୟଥିତ ବୁକୁ ତା'
ଉଚ୍ଛ୍ୱସି ଉଠେ ପରାଣ ପ୍ରାସେ ।

କେହି ନ ବୁଝନ୍ତି ବେଦନା ତା'ର ଗୋ !
ବେଦନା ତା'ର,
ଆଗୋ ପୂର୍ଣ୍ଣିମା, ଆଗୋ ପୂର୍ଣ୍ଣିମା !
କିଆଁ ପଠାଇଛ ଜ୍ୟୋସ୍ନାଭାର ?

ଜାଣନାକି ସିଏ ଚିର ଉପବାସୀ
ଚିର ଉପହାସୀ ଦୁନିଆ ପାଶେ
ଲକ୍ଷ୍ମୀ ମାଟିରେ ହେମ ହସ ବୁଣି
ମରଇ ମାର୍ଗଶିରୀଷ ମାସେ ।

ରୋଗ ଭୋଗି ଭୋଗି ଛୁଆ ତା' ମରୁଛି
ପଥି ପାଚନ ସେ ଆଣିବ କାହୁଁ
ସାଉ ମହାଜନ ଦୁଆର ଜଗିଛି,
କେତେ ସେ ସହିବ କାହାର ଦାଉ !

ପେଟ ବିକଳରେ ହତା ହଳକ ତା'
ଗୁହାଳେ ତୋଳନ୍ତି ହମ୍ୱା ରଡି
ଘରଣୀ ତା'ର କା'କଥା ବୁଝିବ !
ଆଖି ଥନ ଥନ ଘଡିକି ଘଡ଼ି ।

ଭୁଆସୁଣୀ ଝିଅ ଚାହିଁ ସହୁନାହିଁ
ଛିଣ୍ଡା କନାରେ ଘୋଡାଏ ଦେହ,
ଭରା ଯଉବନ ଢୁଆରେ ମିଶାଏ
ନମିତ ନୟନୁ ଗଡାଇ ଲୁହ ।

ଚାହେଁନା ହେବାକୁ ଜ୍ୟୋସ୍ନାଚାରୀ ସେ
ଜ୍ୟୋସ୍ନାଚାରୀ,
ଅମା ଅମ୍ୱରେ ଲୁଚାଇବ ତା'ର
ନଗ୍ନ ଜୀବନ ଭଗ୍ନ ଶିରୀ ।

ଅନ୍ଧାର କୋଳେ ଆସିଥିଲା ଛପି
ଦୁନିଆର ଟାଳି ଅଟ୍ଟହାସ,
ଅନ୍ଧାରେ ତାକୁ ବାଟ ଛାଡ଼ିଦିଅ
ନକର ତା' ପଥେ ଆଲୋକ ଚାଷ ।

ଚଲାବାଟେ ତା'ର ମୁଣ୍ଡ ନ ଟେକୁ
ସବୁଜ କୋମଳ ଦୂର୍ବାଦଳ
ମାଡ଼ି ମାଡ଼ି ଯାଉ କୋଟି କଙ୍କାଳ
କୋଟି କାଙ୍ଗାଳ ଅସ୍ଥିମାଳ ।

ବୃନ୍ତ ବୁକେ ତା' ମୁଣ୍ଡ ନଟେକୁ
କାନ୍ତ କୋମଳ କମ୍ର କଳି,
ଉଜୁଡା ତାହାର ମନ ଉଦ୍ୟାନେ
ମଧୁ ଗୁଞ୍ଜନ ନ ତୋଳୁ ଅଳି ।

ଫେରିଯାଅ ତୁମେ ଚାରୁ ପୂର୍ଣ୍ଣିମା
ବଉଦ ବିଳାସୀ ସଉଧ କୋଳେ,
ମଙ୍ଗଳ ଦୀପ ଜାଳିଛି କୁଆଁରୀ
ପୂଜିବ ତୁମକୁ ହର୍ଷରୋଳେ ।

ବିଦାୟ ନିଅଗୋ, ବିଦାୟ ନିଅ !
ରଙ୍କର ଜୁଇ ଜଳୁଛି ସେଠାରେ
ଅସ୍ତ ଆଲୋକ ଆହୁତି ଦିଅ ।

•

ବି.ଦ୍ର.: "ଆମ ଦେଶ" ପ୍ରଥମ ବର୍ଷ, ତୃୟସଂଖ୍ୟାରେ ୧୯୫୯ ମସିହାରେ ପ୍ରକାଶିତ । ଏହାର ସମ୍ପାଦକ ଥିଲେ ପ୍ରଥିତଯଶା ବାଳକୃଷ୍ଣ ପଟ୍ଟନାୟକ ।

୨୨

# ପୁଣ୍ୟମୟ ତିଥି

ସେ ନିତ୍ୟ ଅତିଥି,
ଜୀବନ ପାଞ୍ଜିରେ କା'ର
ନଥାଏ ତା' ତିଥି ।
ଦିନ, ବାର, ସମୟ ମୁହୂର୍ତ୍ତ
ଅଲେଖା ଅଟଇ ତା'ର
ଆଗମନୀ ତଥ୍ୟ ।
ନିଖିଳ ଜୀବନେ ଶୁଭେ ତା'ର ପଦଧ୍ୱନି
ତା' ନାମ ଶ୍ରବଣେ ତ୍ରସ୍ତ ଏ ବିଶ୍ୱ ମେଦିନୀ ।
ତୋଳେ ହାହା କାର,
ସେ କିନ୍ତୁ ନିରବେ କହେ,
"ଉଠ...ଉଠ...
"ଯିବାବେଳ ହେଲାଣି, ଉଚ୍ଛୁର ।"

ଧୀରେ ଧୀରେ ଥମିଯାଏ ଜୀବନ ଉତ୍ସବ
ନିରବ ହୁଅଇ ବୀଣା, ସ୍ଥିର ହୁଏ ସର୍ବ ଅବୟବ,
ହଂସଗୀତ ହୋଇଯାଏ ବନ୍ଦ,
ନିରବତା ମଧ୍ୟେ ଶୁଭେ ଅନାହତ ଛନ୍ଦ ।

ଲିଭିଯାଏ ଜୀବନର ଜ୍ୟୋତିର୍ମୟ ଶିଖା,
ଏକାକାର ହୋଇଯାଏ
ଲେଖା ଓ ଅଲେଖା ।
ପ୍ରଣମ୍ୟ ଅତିଥି ।
ତଥାପି ରହିଛି ଚାହିଁ ତୁମର ସେ
ଆଗମନ ପୁଣ୍ୟମୟ ତିଥି...
ହେ ବିଶ୍ୱ ଅତିଥି !

•

୨୩

# ମନ

ମାଗୁନି ଧନ ପ୍ରଭୁ, ମାଗୁନି ଧନ,
ମାଗୁଛି ହାତପାତି
ଶ୍ରୀପଦେ ଶିରୀପତି,
ଦିଅ ହେ ଦିଅ ଏକ ମଧୁର ମନ
ମାଗୁନି ଧନ ପ୍ରଭୁ, ମାଗୁନି ଧନ ।

ଯେ'ମନେ ଅଭିସାର କରିବ ପ୍ରୀତି
ପ୍ରେମ ପ୍ରଣୟ ଧାରା ବହିବ ନିତି,
ନୀତି, କଠିନ ଶିଳା ସରିତ ପରି
ହେବ ହେ ! ପ୍ରବାହିତ ସଙ୍ଗୀତ ଭରି
କଣ୍ଠରେ ତା'ର,
ବହି ଚାଲିବ କହି ବିଶ୍ୱ ସୁନ୍ଦର ।

ସୃଜନଶୀଳ ସ୍ରୋତ ହେଉ ଉଚ୍ଛଳ
ଜୀବନ ଜୟଗାନ ତୋଳୁ ଉତାଳ,
ଚାପରେ ଚାପି ହୋଇ
ନହେଉ ରୁଦ୍ଧ ତହିଁ,
ସେ ନାଚି ନାଚି ଯାଉ ତୋଳି କଲ୍ଲୋଳ
ସୃଜନଶୀଳ ସ୍ରୋତ ହେଉ ଉଚ୍ଛଳ ।

ଶ୍ରଦ୍ଧାର ଉପବନ ହେଉ ମୋ ମନ
ହେଉ ତା' ଆନନ୍ଦର କୁସୁମ ବନ,
ହେଉ ତା' ଭାବମୟ ସୁଧା ସାଗର
ମମତା ମହକରେ ତୋଳି ଲୁଆର,
ସେ ପରି ମନଟିଏ ମାଗୁଛି ପ୍ରଭୁ
ଦିଅ ହେ, ନେଇ ଯାହା ଦେଇଛ ସବୁ ।
ପ୍ରଭୁ ମିନତି ଘେନ,
ଦିଅ ହେ ଦିଅ ଏକ ମଧୁର ମନ
ପ୍ରଭୁ ! ମଧୁର ମନ ।

•

୨୪

# ବରଷା

ବିପୁଳିତ ବାରିଦରେ
ବୁନ୍ଦା ବୁନ୍ଦା ବାରିଝରେ
ଶୁଭେ ଶୁଭ ଶଙ୍ଖ ଧ୍ୱନି ଉଚ୍ଛୁଳା,
ବର୍ଷା ତୋଳେ ଅଭିସାର
ଛୁଇଁବାକୁ ମାଟି ବୁକୁ ମୁକୁଳା ।

ସୁଲୁ ସୁଲୁ ପବନ ତା'
ଭିଜା ଭିଜା ମାଦକତା
ଭରିଦିଏ ଏ' ନିଖିଳ ଅନ୍ତରେ,
ତାପ ତପ୍ତ ମନ ମାଟି
ଲିଭାଏ ନିଦାଘ ତାତି
ବିଭୋରିତ ତା' ମମତା ମନ୍ତରେ ।

କହିଲା ବରଷା ଧାରା
ଆସିଲି ଆସିଲି ପରା
ତୁମ ଡାକ ଶୁଣି ମାଟି ମେଦିନୀ,
ଶାନ୍ତ ହୁଅ ମୋ' ସେବାରେ
ମମତାର ମଧୁ ଢ଼ାଳେ
ମୁଁ ଅଟଇ ସୁଧା ସୁଖ ଦାୟିନୀ ।

ଏ' ପ୍ରକୃତି ବନ ଭୂଇଁ, ବହି ଯିବି ଛୁଇଁ ଛୁଇଁ
ମାଖି ଦେବି କାଉଁରୀର ପରଶ,
ଜଗତ ଜୀବନ ତୋଷି, ଆନନ୍ଦେ ଉଠିବି ହସି
ହଜାଇ ମୁଁ ଦିନ ମାସ ବରଷ ।
ମୁଁ ବରଷା ବରଷା,
ବସୁମୟୀ ବସୁଧାର ଭରସା ।

•

୨୫

# ଶୂନ୍ୟ କାମୀ

ଯାହା ମୁଁ ମାଗିଥିଲି ପାଇଛି ସବୁ
ପୂରଣ କରିଅଛ ପରାଣ ପ୍ରଭୁ,
ନାହିଁ ମୋ କିଛି ଆଉ ମାଗିବି ବୋଲି
କରିଛ ପୂର୍ଣ୍ଣ ମମ ଏ ଭିକ୍ଷାଥାଳି ।
ମାଗୁନି କିଛି ଆଉ ମାଗୁନି ପ୍ରଭୁ
ହେଇଛ ଦିନେ ଯାହା ନିଅ ତା' ସବୁ !

ମୁଁ ମାଜିମୁଜି ତାକୁ କରିବି ସଫା
କଳଙ୍କ ଦାଗ ଲିଭି ଦିଶିବ ତୋଫା,
ବିଭୁ ବିଭୂତି ଜ୍ୟୋତି ଲଭି ଅପାର
ଉଛୁଳି ଉଠିବ ମୋ' ଶୂନ୍ୟ ଭଣ୍ଡାର ।

ଶୂନ୍ୟ ମନ୍ଦିର ଏକ ତୋଳିବି ଶୂନ୍ୟେ
ଭକତି ପୂଜାୟନେ ରହିବି ଧ୍ୟାନେ,
ଶୂନ୍ୟ ତରଙ୍ଗେ ଯିବି ଶିହରି ମୁହିଁ
ବିହ୍ୱଳ ହେବି ଶୂନ୍ୟ ଆଶିଷ ପାଇ ।

ଶୂନ୍ୟର ପ୍ରଶାନ୍ତିମା ନୀଳିମା ଘନ
ଘୋଟିଯିବ ଅନ୍ତର ପରାଣ ମନ,
ଫୁଟିବ ପ୍ରାଣପଦ୍ମ ଅରୁଣ ଆଭା
ଲୋଟିବ ଲୀଳାୟିତ ଲାବଣ୍ୟ ଶୋଭା ।

ସମ୍ମୋହନର ସ୍ୱରେ ସମାଧି ଲଭି
ଦେଖିବି ଶୂନ୍ୟତାର ମୋହନ ଛବି,
ଶୂନ୍ୟ ବିଭୂତି ମାଖି ବିହରି ଶୂନ୍ୟେ
ଲୟେ ହୋଇବି ଲୀନ ଶୂନ୍ୟ ଅଙ୍ଗନେ ।
ପ୍ରଭୁ ! ମୁଁ ଶୂନ୍ୟକାମୀ,
ନହୁଏ ପଥହରା ସଂସାରେ ଭ୍ରମି ।

•

## ୨୬

# ହୁମା

ମହାନଦୀ ମହାପ୍ରବାହ ତୋଳିଛି
ମହୋଦଧି ବୁକେ ମିଶିବା ପାଇଁ
କେଉଁଠେ ପଶିଛି ଗିରି କନ୍ଦରେ
ଶିଳା ସଙ୍ଗିନୀ ଭେଟିଛି କାହିଁ,
କରିଅଛି ତାକୁ ସମ୍ଭାଷଣ
ହସି ହସି ସିଏ ମହା ଆନନ୍ଦେ
ଆରମ୍ଭ କରିଛି ଯାତ୍ରା ପୁଣ ।

ସମ୍ବଲ ଭରା ସମ୍ବଲପୁର
ସହରଠାରୁ ତା ଅଳପ ଦୂର,
ବକ୍ର ମନ୍ଦିରେ ପୂଜା ପାଉଛନ୍ତି
ମହାଦେବ ପ୍ରଭୁ 'ବକ୍ରେଶ୍ୱର'
ଶୈବପୀଠର ନାଆଁଟି "ହୁମା"
ମହାନଦୀ କୂଳେ ଶୋଭା ପାଉଅଛି
ସତେ ଅଲିଅଳୀ କନ୍ୟାସମା ।

ଶିବଲିଙ୍ଗ ତହିଁ ପୂଜା ପାଉଥିଲେ
ନିତି ନିତି ଖୋଲା ଆକାଶ ତଳେ
କାଳୀ ଗାଇଟିଏ ପ୍ରତିଦିନ ଆସି
ଶିବଙ୍କ ଶିରେ ତା' କ୍ଷୀର ଢ଼ାଳେ,
ଦିନେ ଦରଶନେ ଆସିଲେ ରାଜା
ଭାବିଲେ ସେ ଏକ ମନ୍ଦିର ତୋଳି
ଉଡାଇବେ ତାଙ୍କ କୀରତି ଧ୍ୱଜା ।
ରାଜା ବଳରାମ, ଶିଳ୍ପୀ ଡକାଇ
ନିର୍ମାଣ କଲେ ମନ୍ଦିର ତହିଁ
କିଛିଦିନ ପରେ ମନ୍ଦିର ନଇଁଲା
ନଦୀ ସୁଅ ମାଡ଼ ନପାରି ସହି ।

ବକ୍ରତା ପାଇଁ ଠାକୁରଙ୍କ ନାଁ 'ବକ୍ରେଶ୍ୱର'
ସତେ ଅବା ସିଏ ଆନନ୍ଦମତ୍ତ
ଭକ୍ତି ବିଭୋର ନୃତ୍ୟଶୀଳ ।

ମନ୍ଦିର ପାଖେ ମହାନଦୀ ଧାରେ
ରହିଅଛି ବହୁପଥର ତହିଁ
ସେ ପବିତ୍ର ଧାରୁ ମାଛ ଯେ ମାରିଛି
ପାଲଟି ଯାଇଛି ପଥର ସେହି ।
ବାରଣ ମାନନ୍ତି, କେହି ନ ମାରନ୍ତି, ସେଠାର ମାଛ
ପଥର ଖୋଲରେ ଆନନ୍ଦରେ ରହି
ଜଳ କ୍ରୀଡାରତ ମାଛ କଇଁଛ ।

ଗର୍ଭ ଗୃହରୁ ନଦୀ ଗର୍ଭକୁ
ଲମ୍ୱି ଯାଇଛି ସୁଡଙ୍ଗଟିଏ
ବନ୍ୟା ଆସିଲେ ସୁଡଙ୍ଗ ଭିତରେ
ମାଛ ଦଳ ପଶି ଯାଆନ୍ତି ସୁଏ,
ପୂଜାକାମ ସାରି ଭୋଗଥାଳି ଧରି ପୂଜକ ଆସି
ମାଛ ମାନଙ୍କର ନାଁ ଧରି ସିଏ
ଛାଡନ୍ତି ଡାକ ଆନନ୍ଦେ ହସି ।
"ସାନକଲିଆ ରେ, ବଡ଼ କଲିଆ,
ଆମ ଡାଲିଆରେ, ଜମଡାଲିଆ
ସାନ ବାଙ୍କିଡ଼ିରେ, ବଡ଼ ବାଙ୍କିଡ଼ି,
ଆସରେ ଖାଇବ ଭୋଗ ଖେଚୁଡ଼ି ।"
ପାଣିରୁ ଉଠନ୍ତି ଉପରକୁ ମାଛ ସର୍ ସାର୍,
ଟକ୍ ଟାକ୍ ଗିଳି ପାଣିରେ ପଶନ୍ତି ସେ ବାର ବାର ।

•

ବି.ଦ୍ର. ଐତିହାସିକ ଶିବପ୍ରସାଦ ଦାଶଙ୍କ ମତରେ, ହୁମା ମନ୍ଦିର ଖ୍ରୀ. ୧୫୪୫-୧୫୬୦ ମଧ୍ୟରେ ନିର୍ମିତ ।

୨୭

# ନିଦ୍ରାବତୀ ନଦୀ

ତୁମେ ଏକପଦୀ,
ଲୀଳାମୟୀ ନିଦ୍ରାବତୀ ନଦୀ ।

ତୁମେ ହେଲେ ପ୍ରବାହିତ ଶରୀର ଶଯ୍ୟାରେ
ମଗ୍ନ ମନ ଧ୍ୟାନଯୁକ୍ତ ସେ ଯୋଗ ମୁଦ୍ରାରେ
ସଂଜୀବନୀ ସୁଧା,
ସଂଚରେ ଶରୀରେ ମନେ
ମୋହାବିଷ୍ଟ ବିମୁଗ୍ଧ ବସୁଧା ।

ନିଦ୍ରା ଏକ ମହାଯୋଗ, ମହାତପ ଧାରା
ପ୍ରତିଦିନ ପ୍ରତିଜନ ହୋଇ ଆତ୍ମହରା
ସାଧନ୍ତି ସରବେ,
ଅଜ୍ଞାତରେ ମଗ୍ନ ସର୍ବେ ଅଧାତ୍ମ୍ୟ ପରବେ ।

ମହାଶୂନ୍ୟେ ଉଦ୍‌ବେଳିତ ଉର୍ଜାର ଉଲ୍ଲୋଳ
ତହିଁରୁ ନିସୃତ ହୁଏ, ମହାଶକ୍ତି ସୁଧା ଛଳଛଳ
ନିଦ୍ରା, ଭୂମେ ଚୁମେ ସର୍ବଜୀବେ,
ସଂଚରେ ନୂତନ ଶକ୍ତି ଭାବେ, ଅନୁଭବେ ।

ନିଦ୍ରିତ ରଜନୀ କୋଳେ
ଏ ନିଖିଳ ଆତ୍ମାର ଭଣ୍ଡାର
ଭରିଯାଏ ଅମୃତରେ
ନବଶକ୍ତି ନେଇ ସୁଧାଭାର,
ଲୀଳାମୟୀ ନିଦ୍ରାବତୀ ନଦୀ
ତୁମେ ଏକପଦୀ ।

•

୨୮

# କ୍ରିୟାଯୋଗୀ

ସଂସାରୀ ମଣିଷଟି ପ୍ରକୃତି ଦାସ
ପ୍ରକୃତି ପ୍ରୟୋଜନେ କରେ ସେ ବାସ,
ଇନ୍ଦ୍ରିୟମାନଙ୍କର ତାଡ଼ନା ସହି
ସେବାରେ ଲାଗିଯାଏ ଜୀବନ ଦେଇ ।

ଇନ୍ଦ୍ରିୟ ହାତେ ହୋଇ ଖେଳନାଟିଏ
ନାଚଇ ନାନା ମତେ ନଚାଏ ସିଏ,
ସେ ଅଟେ, ଇନ୍ଦ୍ରିୟର ସେବା କିଙ୍କର
ତା' ବିନା ସତେ ବ୍ୟର୍ଥ ଜୀବନ ତା'ର ।

ଇନ୍ଦ୍ରିୟ ଜୟ କରି ଯେ ଉଠେ ଊର୍ଦ୍ଧ୍ୱେ
ମନକୁ ସ୍ଥିର ରଖେ ପରମ ପଦେ,
ଅଟେ ସେ ତପଚାରୀ ତପସ୍ୱୀ ଜନ
ବ୍ରହ୍ମ ପଦରେ ଧ୍ୟାନ ରହେ ତା' ମନ ।

କ୍ରିୟା ଯୋଗ ସମୃଦ୍ଧ ଯୋଗୀ ଜୀବନ
ବହିର୍ମୁଖୀ ବିଭ୍ରାନ୍ତ ଇନ୍ଦ୍ରିୟଗଣ -
ହୁଅନ୍ତି ଅନ୍ତର୍ମୁଖୀ, ସେ ଆତ୍ମବଶ
କରନ୍ତି ପାନ ବିଭୁ ବିଭୂତି ରସ ।

'ଦେହାତ୍ମବୋଧ' ମୁକ୍ତ ହୁଅଇ ମନ
ସଂଯତ ହୋଇଯାନ୍ତି ଇନ୍ଦ୍ରିୟଗଣ,
ଆତ୍ମ ଶକ୍ତିର ସଞ୍ଜିବନୀ ସୁଧାରେ
ହୁଏ ପୁଷ୍ପିତ ପ୍ରାଣପଦ୍ମ ବିଧିରେ
ଲଭେ ବିଭୁ ବିଭୂତି,
ସେ ଯୋଗୀ ଜନ ରଚି ଯୋଗସମାଧି ।

•

୨୯

# ଶୂନ୍ୟ ମନ୍ଦିର

ଶୂନ୍ୟ ମନ୍ଦିରେ ଶୁଭୁଅଛି ଖାଲି
ଶୂନ୍ୟତା କୋଳାହଳ
ସମସ୍ତେ ଖୋଜନ୍ତି ପରିଚୟ ଏଠି
ନିବିଡ଼ତା ହୃଦୟର,
କିଏ ଦେବ ତାହା ଢ଼ାଳି !
ଶୂନ୍ୟତାର ଏ' ସରିତ୍ ଶଯ୍ୟାରେ
ଚୋରାବାଲି....ଚୋରାବାଲି ।

ଯେଉଁଠି ଥାପିଲେ ପାଦ ଦିଇଟିକୁ
ପଶି ପଶି ଯାଏ ତଳେ,
ଖସି ଖସି ଯାଏ, ଚୋରାବାଲି ପାଦୁ
ବୁଡାଏ ଗଭୀର ଜଳେ
ନପାରେ ତାହାକୁ ଏଡି,
ଉଠାଇ ନପାରେ ପାଦ ଦି'ଇଟି ସେ
ବାଲି ବନ୍ଧନ ବେଡ଼ି ।

ବିକଳ କଣ୍ଠେ ଚିତ୍କାର କରେ
"କିଏ ଅଛ ପାଶେ ଆସ,
ଦୁଃଖ ନଈର ଚୋରାବାଲି ସୁଅ
କରୁଅଛି ମୋତେ ଗ୍ରାସ ।
ଶୁଣେ ଖାଲି ପ୍ରତିଧ୍ୱନି,
ଶୂନ୍ୟତା କହେ ମୁଁ ଅଛି ପାଖରେ
କାନେ କାନେ, ତୁନି ତୁନି ।
ମୁଁ ପରା ତୁମର ସାଥୀ,
କୋଳେଇ ନେବି ମୁଁ, କୋଳେଇ ନେବି ହେ !
ଆବେଗେ ହୃଦୟ ପାତି ।
ଆବେଗେ ହୃଦୟ ପାତି ।

•

୩୦

# କନ୍ଧମାଳ

ମୁଁ ଅଟେ କନ୍ଧମାଳ
ପର୍ବତ ମାଳ ମାଳ
ନିର୍ଝରେ ଶତ ଗିରି ଝରଣା,
ମୋ ବନ ପ୍ରକୃତିରେ
ସ୍ୱର୍ଗ ସୁଷମା ଝରେ
ସତେ ତା' ପାରିଜାତ ବରଣା ।
ଆସଇ ଋତୁଚକ୍ର ମୋ'ପୁରେ
ତା'ପଦେ ରୁଣୁଝୁଣୁ ନୂପୁରେ ।

ମୋ' ବନ ଗିରିରାଜି
ସୌନ୍ଦର୍ଯ୍ୟେ ରୂପମାଜି
କରନ୍ତି ତାଙ୍କ ବେଶ ବଦଳ,
ଋତୁକେ ନୂଆ ରୂପ
କି ଚିତ୍ତ ଉଲ୍ଲାସକ
କି ରୂପ ରସମୟୀ କଲ୍ଲୋଳ ।
ସୁଦୂର ଦିଗ୍‌ବଳୟ ଶ୍ୟାମଳ
ନଜରେ କା'ରେ କହ ପାଗଳ !!

ଉଦୟ ଭାନୁ ଭାବ
ପ୍ରଭାତ ପ୍ରୀତିରାଗ
ପ୍ରକୃତି ରାଜବଧୂ ଲଲାଟେ,

ଗିରିବାଳା ତଟିନୀ
ନୃତ୍ୟମୟୀ ନଟିନୀ
ଯାଆନ୍ତି ନାଚି ନାଚି ସେବାଟେ,
ଦିଅନ୍ତି ଅସ୍ତରାଗ ମେଲାଣି
ଆସିବେ ନିଶି ଶେଷେ ସେ ପୁଣି ।

ମୋ, ଡ଼ଙ୍ଗର ପଦର
ବନ କୁସୁମ ଭାର
ପାଳିତ ପଶୁପକ୍ଷୀ ବିବିଧ,
ଯିଏ ଦେଖିଛି ଥରେ
ମନ ତା ଝୁରି ମରେ
କେତେ ବା' ବୋଧ କେତେ ଅବୋଧ
ପ୍ରୀତି ପ୍ରତ୍ୟୟ ସ୍ନେହ ଚର୍ଚ୍ଚିତା
ଶ୍ରଦ୍ଧା ସାରଲ୍ୟ ସୁଧା ଅର୍ଚ୍ଚିତା ।

ଛନ୍ଦ କପଟ ଛଳ
ନଥାଏ ମନେ ମୋର
ସୌନ୍ଦର୍ଯ୍ୟ ମୟୀ ମୋର ପ୍ରକୃତି,
ହୃଦୟ ମନ ପରା
ଶ୍ରଦ୍ଧା ଭଣ୍ଡାର ଭରା
ନଥାଏ ବିରୋଧ ବା ବିକୃତି,
ମୁଁ କଳାମୟୀ କନ୍ଧମାଳରେ !
ପ୍ରକୃତି ରାଣୀ ରାଜକନ୍ୟାରେ ।

•

୩୧

# ମିନତି ମମ

ମୁଁ ପ୍ରଭୁ ଡାକିଅଛି ତୁମକୁ ଯେବେ
ଶୁଣିଛ ବୋଲି ସଦା, ଡାକୁଛି ଏବେ,
କେବେ ତ ଧନ ରତ୍ନ ନଥିଲି ମାଗି
ବିଶ୍ୱ ଜୀବନେ ମୁହିଁ ହେବାକୁ ଭାଗି -
ଏବେ ମାଗେ କରୁଣା,
ଭାବୁନି ମଧ ତୁମେ କରିବ ଊଣା ।

ଦେଇଛ 'ସ୍ନେହ' ପ୍ରଭୁ ମନରେ ଭରି
ହୁଏ ମୁଁ ବିଶ୍ୱମୁଖୀ ତାକୁ ପ୍ରସାରି,
ସ୍ନେହର ପାରାବାର କର ମୋ ମନ
ସାରା ବିଶ୍ୱରେ ବାଣ୍ଟି ଦିଏ ସେ ଧନ
ପ୍ରଭୁ ଯାଉ ତା' ବହି
ବିଶ୍ୱ ହୃଦୟେ ହୋଇ ସ୍ନେହର ନଈ ।

'ସାହସ' ଭରିଅଛ ମନରେ ମମ
ତାହାକୁ କରିଦିଅ ବିଶାଳ ତମ,
ଚାଲିବି ଯାତ୍ରାପଥେ ଅମଡା ମାଡି
ବାଧା ବନ୍ଧନ ଶତ, ସତତ ଏଡି
ବିଶ୍ୱ ସେବା ବରତେ,
ସାଜେ ମୁଁ ଅଭିଯାତ୍ରୀ କର୍ତ୍ତବ୍ୟ ପଥେ ।

ବିଭବେ ଭରିଅଛ ଭଣ୍ଡାର ମୋର
କରେ ତା' ସଦା, ଶାନ୍ତ ମନ ଅସ୍ଥିର,

ଦାନ ଯଜ୍ଞର, ମୋତେ କରହେ ହୋତା
ଢ଼ାଳେ ଆହୁତି ତହିଁ, ବିଶ୍ୱ ବିଧାତା
କର ହେ ଶିଷ୍ଟ,
କର୍ତ୍ତବ୍ୟ ପାଳେ ହୋଇ ମୁଁ ନୀତିନିଷ୍ଠ ।

ସଦୟ, ସଦାଚାର ମହାଉତ୍ସବେ
ଶାନ୍ତି ସନ୍ତୋଷ ତୃପ୍ତି ଜୀବନେ ଲଭେ,
ସେ ସୁଧା ସେବି ସର୍ବେ ହୁଅନ୍ତୁ ତୋଷ
ଅବୋଧ ସନ୍ତାନର ତା' ଅଭିଳାଷ
ପ୍ରଭୁ ମାଗୁଣି ମୋର,
ଶ୍ରଦ୍ଧାରେ ପରିପୂର୍ଣ୍ଣ କର ଅନ୍ତର ।

ଡାକୁଛି ବିକଳରେ, ପରାଣ ପ୍ରିୟ !
ଆସ ଆସ ମୋ ପୁରେ ଦର୍ଶନ ଦିଅ,
ରହିଛ ଦୀର୍ଘଦିନ ମୋ ପୁର ଛାଡି,
ଆସ ଆସ ହେ ପ୍ରିୟ, ଭାବ ବିହାରୀ !
ଥରେ ଦିଅହେ ଦେଖା,
ପରାଣ ସଖା ମୋର ପରାଣ ସଖା ।

•

୩୨

# ଶୁଣରେ ମଣିଷ ଜାତି

ପ୍ରକୃତି କୋଳେ ଲାଳିତ ପାଳିତ
ଅଟନ୍ତି ମଣିଷ ପରା
ତାହାର ଶ୍ରେଷ୍ଠ ସନ୍ତାନ ହୋଇ
ଅନୁଶାସନର ଧାରା
ନମାନେ ଜୀବନେ କେବେ,
ତା' ସହିତ ସଦା ସଂଘର୍ଷ କରି
ଦାରୁଣ ଦୁଃଖ ଭୋଗେ ।

ଦୀପ୍ତ ସୂର୍ଯ୍ୟ ଆଲୋକ ବନ୍ୟା
ଖେଳାଇ ଦିଅନ୍ତି ନିତି
ବିରୋଧ ନକରି ତାରାଗଣ ସାଥେ
ଲଭନ୍ତି ଅସ୍ତଗତି
ଘୋଟେ ଅନ୍ଧାର ଘନ,
ତାରାଗଣ ସ୍ୱଚ୍ଛ ଆଲୋକ ବିତରି
ହୁଅନ୍ତି ହୃଷ୍ଟ ମନ ।

ରାତିରେ କରନ୍ତି ରାଜପଣ ସିଏ
ଦିନବେଳେ ଦିନମଣି,
କେ' କାହାର ସୀମା ବାରଣ ବାଡ଼କୁ
ନ ଯାଆନ୍ତି ଅତିକ୍ରମି
ପ୍ରକୃତି ନିୟମକୁ,
ଲଙ୍ଘନ କଦା ନକରନ୍ତି କେହି
ଏଡ଼ି ଦେଇ ପ୍ରକୃତିକୁ ।

ରାତ୍ରେ ତାରାଗଣ, ସାରି ରାଜପଣ
ଦିଗ୍‌ବଳୟ କୋଳେ ଯାଇ
ପାଛୋଟି ଆଣନ୍ତି ଜଗତନାଥଙ୍କୁ
ଉଷା ଅଭିଷେକ ପାଇଁ,
ତା'ପରେ ଯାଆନ୍ତି ଲୁଚି
ଅରୁଣ ଉଠନ୍ତି ଆଲୋକି ବଳୟ
ହସେ ପ୍ରିୟତମା ପ୍ରାଚୀ ।

ପ୍ରକୃତି ମାତାର ସନ୍ତାନ ହୋଇ
ମର୍ତ୍ତ୍ୟ ମଣିଷଗଣ
ସଦା ସଂଘର୍ଷେ ମତ୍ତ ରହନ୍ତି
ପାସୋରି ମାତୃଗୁଣ
ମତ୍ତ କ୍ଷମତା ଲୋଭେ,
ଦୁର୍ଲଭ ଅଟେ ମଣିଷ ଜୀବନ
ଜର୍ଜର ପରାଭବେ ।

ଜଲ୍ଲାଦ ଦଳ, ଛଦ୍ମବେଶରେ
ନ ରଚ ସଂହାର ଲୀଳା
ମାନବ ଜୀବନ କର ଉପବନ
କୁସୁମ ସୁବାଷ ବୋଳା
ପ୍ରକୃତି ଉଠୁ ହସି,
ତା'ହସ ବନ୍ୟା ସାରା ଜଗତରୁ
ଧୋଇ ଦେଉ ଘୃଣା ମସି ।

•

୩୩

# ଦୁର୍ଗମ ସେ ଶିଖର ପଥ ସଦା

ତୁମର ସେଇ କୁବେର ପୁରୀ
ଦେଖିବି ବୋଲି ମନ
ସବୁ ସୁନ୍ଦର ପଣ
ଶ୍ୟାମଳ ଅପଘନ ।
ପୃଥିବୀ ଯାକ ପାଦପ ଲତା
ନଦୀ ଝରଣା ଜୀବନ ସତ୍ତା
କେତେ ରତନଧନ,
ରଖିଛ ଗିରିରାଜ କୁବେର
ଆରୋହିଅଛି ଦେଖିବି ଶୋଭାବନ ।

ଅଳପ ବାଟ ଚଢ଼ିଛି ମୁହିଁ
ଲାଗିଲା ମୋତେ ଥକା
ବସି ପଡିଲି ଗଛ ଛାଇରେ
ପକାଇ ଦେଇ ଚକା
ଆସିଲା ବୁଢ଼ୀ ଟିଏ,
ବଢ଼ାଇ ଦେଲା ପାଚିଲା ଫଳଟିଏ ।
କହିଲା ହସି, "କେଡ଼େ ମଧୁର କେଡ଼େ ରସାଳ ଫଳ
ଜକାଇ ଆସେ ପାଟିରେ ସଦାଲାଳ
ଦେବି ମୁଁ ଆଉ, ଖାଆରେ ପୁଅ, ଖାଆରେ ପେଟ ପୂରା
ଚଢୁଛୁ କିଆଁଏ' ପରବତ ତୀଖରୁ ତୀଖ ପରା ।
କେ' ଚଢ଼ି ପାରନ୍ତି ନି,
ହତାଶ ହୋଇ ଆସନ୍ତି ଫେରି
ପାଦ ଦେଶକୁ ପୁଣି ।"

କହିଲି ମୁହିଁ, ବୁଢ଼ିକୁ ଚାହିଁ,
"କରନା ମୋତେ ନାହିଁ,
ମୁଁ ଫେରି ଗଲେ ମନଟା ମୋର
ହୋଇବ ହାଇଁ ପାଇଁ ।

ଶିଖରେ ତା'ର ପହଞ୍ଚିବାକୁ
ବଳିଛି ମନ ମୋର,
ପଥେ ଅପଥେ ଭ୍ରମୁଛି ମୁହିଁ
ତଥାପି ନିରନ୍ତର ।
କେ ନାହିଁ ମୋର ସାହା
ସାଥି ମୋ' ଚଉବାହା ।
ଲକ୍ଷ୍ୟ ପଥେ ରହିଛି ଲୟ
ଦୂରେଇ ଦେଇ ମନରୁ ଭୟ
ବାଧା ବିପଦ ସହିବି ବୁକୁ ପାତି
ଅତୁଟ ରଖି ଗତି,
ଚାଲିଛି ଏକା...ଚାଲିବି ଏକା ମୁହିଁ
ମାଆ ଗୋ ମୋର ମନରେ ଆଜି
ଟିକିଏ ଦକା ନାହିଁ ।"

ଲକ୍ଷ୍ୟ ପଥେ ରହିଲେ ଲୟ
ନଥାଏ ଭୟ କାରେ
ନିଜକୁ ନିଜେ କରେ ସେ ଭୟ,
ବଦଳି ଯିବ କାଳେ
ଓହରି ଯିବ ଯଦି,
ସ୍ୱପ୍ନ ତା'ର ହେବକି କେବେ ସିଦ୍ଧି !!
ଉଠିବ ଶିଖେ ଶତ ବିପଦ ଟାଳି
ଯେ ଅଭିଯାତ୍ରୀ ହୁଏକି କେବେ ଭାଳି !!

•

୩୪

# ପିଥାଗୋରସ

ବଣୁଆ ଫୁଲର ମହକେ ମୋହିତ
ବଣୁଆ ବାଳକଟିଏ
ଅଣ୍ଟାରେ ସିଏ ଗୋଡାଇ ଦେଇଛି
ଦଦରା ଦରଭା ଖିଏ
ହାତରେ ଧରିଛି କାତି,
ଶୁଖିଲା କାଠ ସେ ସଂଗ୍ରହ କରି
ବିଡାଟିଏ ବାନ୍ଧେ ନିତି ।

ଭାରି ସୁନ୍ଦର ବିଡ଼ାଟି ତାହାର
ବନ୍ଧାରେ ଥାଏ କଳା
କୁନି କାରିଗର ବାନ୍ଧିଛି ତାକୁ
ସତେ କେଡେ ମନଭୁଲା
ବଜାରେ ଥୋଇଲା କ୍ଷଣି,
ବିଡାଟି ତାହାର ବିକ୍ରି ହୋଇଯାଏ,
ଗରାଖର ମନ ଜିଣି ।

ଖାଦ୍ୟ ଦ୍ରବ୍ୟ, କିଣି ପଇସାରେ
ଘରକୁ ଯାଏ ସେ ଫେରି,
ପିତା ମାତା ମୁଖେ ଆହାର ଦିଏ ସେ'
ଆନନ୍ଦରେ ମନଭରି ।
ଏ'ତା' ନିତିଦିନ ପେସା
ବଡ଼ ହେବା ପାଇଁ ଜୀବନରେ କେବେ
କରି ନଥିଲା ସେ ଆଶା ।

କାଠ ବିଡ଼ା ଥୋଇ ପିଲାଟି ବସିଛି
ଗରାଖଙ୍କ ବାଟଚାହିଁ,
କିଏ ଜଣେ ବାବୁ ବୁଲା ବୁଲି କରି
ଅଟକିଲେ ଆସି ତହିଁ ।
ଚାହିଁଲେ ବିଡାକୁ ତା'ର
କେଡ଼େ ସୁନ୍ଦର ଚିତ୍ର ଟିଏ ବା'
ଆଙ୍କିଛି କଳାକାର !!

କଅଁଳ ମଧୁର ସ୍ୱର ତୋଳି ତାକୁ
ପଚାରିଲେ ହସି ହସି,
କିଏ ବାନ୍ଧିଛିରେ ଏତେ ଯତନରେ
ବିଡା କରି କଷାକଷି
ମୁହଁକୁ ଚାହିଁଲା ପିଲା,
"ବଡ଼ କାଇଦାରେ ବାନ୍ଧିଛି ମୁହିଁ
ନହେବାକୁ ତାହା ଢ଼ିଲା ।"

"ଜଣାପଡୁ ନାହିଁ ଏଇଟା ତୋ'ର
କୁନି ହାତ କାରିଗରୀ
ଆଖି ପିଛୁଳାକେ ପିଲାଟି ବିଡାର
ବାନ୍ଧଣୀ ଦେଲା ଖୋଲି
କହିଲା ବାନ୍ଧୁଛି ଏବେ,
ମିଛ କହୁନାହିଁ ମିଛ କହେ ନାହିଁ
ଗରାଖ ଈଶ୍ୱରେ କେବେ !

ସ୍ତମ୍ଭିତ ହେଲେ 'ଡେମୋକ୍ରାଟସ୍'
ମହାନ୍ ଦାର୍ଶନିକ
ତା' ଭିତରୁ ସିଏ ଆବିଷ୍କାର କଲେ
ନୂତନ ପ୍ରତିଭା ଏକ
କହିଲେ ମଧୁର ସ୍ୱରେ
ପାଠ ପଢ଼ାଇ ମୁଁ ମଣିଷ କରିବି
ଯିବୁ କିରେ ଆମ ଘରେ ?"

ଲାଜ ଲାଜ ହୋଇ ଚାହିଁଲା ମୁହଁକୁ
କହିଲା ସେ ଭାବି ଭାବି
ଭାରି ଇଛା ମୋର ପାଠ ପଢ଼ିବାକୁ
ନେଲେ ମୁଁ ସାଥିରେ ଯିବି,
ଖୁସିରେ ଦାର୍ଶନିକ
'ପିଥାଗୋରସ୍'କୁ ସାଥେ ନେଇଗଲେ
କାଠୁରିଆ ପିଲା ଏକ ।

ସେ ପାଠ ପଢ଼ିଲା, ମହକ ବାଢ଼ିଲା,
ତାଙ୍କ ପରି ହେଲା ଜଣେ
ହେଲା ମହାଜ୍ଞାନୀ ଦାର୍ଶନିକ ସେ
ପୂଜନୀୟ ସନମାନେ ।
ବେନି, ଜ୍ଞାନାଲୋକ ଦେଇ
ଇତିହାସ ପୃଷ୍ଠା ମଣ୍ଡନ କରି
ହୋଇଛନ୍ତି କାଳଜୟୀ ।

•

୩୫

# ତୁଟିଗଲା ଅଭିମାନ

ଆଖିରେ ଭରିଛି ଅନେକ କଥା ମୁଁ
ପାଟିକୁ ବାରଣ କରି
ପାଟି ହୁଏ କିନ୍ତୁ ଖଲ ଖଲ ଖାଲି
ମନରେ ଗୁମାନ ଭରି
ଚାହେଁ ତା'ର ଅଧିକାର,
"ଖାଲି 'ଖାଇବାର ଯନ୍ତ୍ର' ହେବାରେ
ସନ୍ତୋଷ ନାହିଁ ତା'ର ।"

ପାଟିକୁ, ମୁଁ ହସି ବୁଝାଇ କହିଲି
ଏଡ଼େ ଅଭିମାନ କିଆଁ ?
ବୁଝିପାରୁନୁ କି, ଶାନ୍ତ କରୁଛୁ
ତୁ ପରା ଜଠରନିଆଁ
ସବୁ ଦେଇ ପାରେ ଢାଳି
ଶାନ୍ତ କରୁଛୁ, ତୁ ପରା ତା' ମୁଖେ
ଖାଦ୍ୟ ପାନୀୟ ଢ଼ାଳି !!

ଅମୃତ ନଈ ଅଟେ ତୋର ବାଣୀ
ବହୁଛି ସବୁରି ପ୍ରାଣେ
ତା'ର ଶକତିରେ ବିଶ୍ୱ ଚାଲିଛି
ଭରି ଅମୃତ ଗାନେ,
ଆଖି ସାଥେ କିଆଁ ବାଦ ?

ତୁ' ଯାହା ନ ପାରୁ ପ୍ରକାଶ କରି ରେ !
ସିଏ କରିପାରେ ତା'ତ ।
ସେ ପରା ଅଟଇ ମଣିଷ ମନର
ଅକୁହା କଥାର ଖଣି
ତା'ରି ଭାଷାରେ, ସାରା ଜଗତର
ହୃଦୟକୁ ପାରେ ଜିଣି,
ତୁ' ତାକୁ ଦେଇଛୁ ବଳ
ତୋ ପ୍ରୀତି ପ୍ରତ୍ୟୟେ ଉଚ୍ଛଳିତ ସେ
ଭାବ ରସେ ଢ଼ଳଢ଼ଳ ।
ବୁଝିଗଲା ତା'ର ମନ
ତୁଟିଗଲା ତା'ର ତୁଟିଗଲା ଅଭିମାନ ।

ପ୍ରତିଟି ଅଙ୍ଗ ଅବା ପ୍ରତ୍ୟଙ୍ଗ
ସ୍ଥାନିତ ଅଟନ୍ତି ଯହିଁ
ମହାଶିଳ୍ପୀର ମହାଶିଳ୍ପ ଏ'
ବ୍ୟତିକ୍ରମ କିଛି ନାହିଁ,
ନିଜ ଆସନରେ ସରବେ ଶ୍ରେଷ୍ଠ ସଦା
କାହା କାମ କେହି କରି ପାରିବେନି କଦା ।
କେ ନୁହେଁ ଛୋଟ ବା ବଡ଼
ନିଜର ଆସନ ନିଜ ପାଇଁ ଅଟେ ଗଡ଼ ।

•

୩୬

# ମେରୀ

ହେ ଜନନୀ ! କରୁଣା ବାରିଧି
ଭରି ହୃଦେ ପ୍ରେମ ସୁଧା ନିଧି -
ମହିମା ମଣ୍ଡିତା 'ମେରୀ' ବିଶ୍ୱ ବନ୍ଦନୀୟା
ତୁମେ ମାତା ଚିର ପୂଜନୀୟା !
ଦେବ ଦିବ୍ୟ ଭୁବନର ରାଣୀ,
ଢ଼ାଳ ଗୋ ଆଶିଷଧାରା ଏ ମର୍ତ୍ତ୍ୟ ଭୁବନେ
ପ୍ରେମମୟୀ ନିଖିଳ ଜନନୀ ।

ଜୀବନର ଉପତ୍ୟକା ଅଶ୍ରୁରେ ପ୍ଲାବିତ
ଅସୁମାର ଦୁଃଖ ଆଉ ଯନ୍ତ୍ରଣା ମଥିତ,
ଶୁଭେ ଖାଲି ଚତୁଃର୍ଦ୍ଦିଗେ ଆର୍ତ୍ତହାହାକାର
ତୁମ କାନେ ପଡୁନିକି ଏ ଜଗତ କଦର୍ଥନା ସ୍ୱର !
କାନ୍ଦୁଛି ବିକଳେ
ହତଭାଗ୍ୟ ଏ ସନ୍ତାନେ ତୋଳିନିଅ କୋଳେ ।
ଅନାଅ ଗୋ ବାରେ
ସଦୟ ଦୃଷ୍ଟିରେ ।

"ଆସିବ ଆସିବ ଶୀଘ୍ର ସେ ଶୁଭ ଲଗନ
ସମାପିତ ହେବ ନିର୍ବାସନ
ବିଶ୍ୱ ମାତୃଶକ୍ତି ମେରୀ ଅନୂଢ଼ା କୁମାରୀ
ଭବ ଦିବ୍ୟ ସ୍ୱପ୍ନ ସହଚରୀ,
ଅବତୀର୍ଣ୍ଣ ହେବେ ଧରାତଳେ
ଜ୍ୟୋତିର୍ମୟ ଦେବ ଶିଶୁ ଧରି ତାଙ୍କ କୋଳେ
ଦେବଦୂତପ୍ରଭୁ 'ଯୀଶୁଖ୍ରୀଷ୍ଟ',
ଏ' ମହି ମଣ୍ଡଳେ ହେବ ମହିମା ପ୍ରକଟ ।

•

୩୭

# ପିଣ୍ଡଦାନ

ଯାହାଥିଲା ଜୀବନରେ ବାସ୍ତବତା ଦିନେ
ଏବେ ତା' ଯାଇଛି ଲିଭି ସ୍ୱପ୍ନର ଭୁବନେ,
ପିତା ମାତା ଜୀବନ ଆଧାର
ଲଭିଛନ୍ତି ବ୍ରହ୍ମମାର୍ଗେ ଜ୍ୟୋତିର୍ମୟ ପୁର ।

ଏ ଜୀବନେ ଥିଲେ ବେନି ଅମୃତ ପ୍ରବାହ
ବ୍ରହ୍ମ ତରଙ୍ଗରେ ସେତ ଭାସମାନ ଜ୍ୟୋତିର ବିଗ୍ରହ,
କରିଛନ୍ତି ମଧୁମୟ ସୃଜନର ଧାରା
ଆମେ ତାଙ୍କ ସର୍ଜନ ପସରା
କରୁଛୁ ବିଳାପ,
ଆଉକି ମିଳିବ
ଶାନ୍ତିମୟ ସେ କୋଳ ତଳପ !!

ଆଜି ସିଏ କାୟାହୀନ ଛାୟା ମୂର୍ତ୍ତି ପରି
ମାନସ ଭୂମିରେ ନିତି ଉଠନ୍ତି ଶିହରି,
ସେ ଦୃଶ୍ୟରେ ଆହ୍ଲାଦିତ ହୁଏ ମନ ପ୍ରାଣ
ବିପୁଳିତ ବିହାୟସେ ତାଙ୍କ ଜୟଗାନ,
ଥିଲା ଯେଉଁ ଭସ୍ମ ଅବଶେଷ
ପାବନି ଗଙ୍ଗାର ଗର୍ଭେ ହୋଇଲା ନିଃଶେଷ ।

ଏଣିକି ସେ ହୋଇଗଲେ, ଶ୍ରଦ୍ଧା ଆଉ ଶ୍ରାଦ୍ଧର ଅତିଥି
ବର୍ଷକରେ ଦିନେ ତାଙ୍କୁ ପିଣ୍ଡଦାନେ କରିବୁ ତୃପତି,
କିଛି ଦିନ ପରେ,
ଅର୍ଦ୍ଧ ଲିଭା ଚିତ୍ର ପରି ସେ ରହିବେ ମାନସ ପଟରେ ।
ଆସିବ ସମୟ ଦିନେ ସ୍ମୃତି ଯିବ ଲିଭି
ମିଳିବେନି ମନ ମଧ୍ୟେ ଯେତେ ଖୋଜିଲେ ବି
ଶୂନ୍ୟେ ଥିବୁ ଚାହିଁ,
ସେ କହିବ, 'ମୋ ପାଖରେ ଚିହ୍ନ କିଛି ନାହିଁ ।'

•

୩୮

# ଲିଭା ଲିଭା ମୁରୁଜ

ସ୍ମୃତିର ସେ ଲିଭା ଲିଭା ମୁରୁଜ ମଣ୍ଡଳ,
ବିସ୍ମୃତିର ଥାକେ ଥୁଆ
ଦିନେ ଥିଲା ନୂଆ ନୂଆ
ଜୀବନର ବେଦି ବୁକେ ଅଲିଭା ବହଳ
ସ୍ମୃତିର ସେ ମୁରୁଜ ମଣ୍ଡଳ ।

ଏ' ବ୍ୟାପ୍ତ ଜୀବନ ଏକ ଅଭିଲେଖାଗାର
ସାଇତା ସ୍ମୃତିର ଏକ ବିପୁଳ ଭଣ୍ଡାର,
ସୁଖ ଦୁଃଖ କେତେ ଅନୁଭୂତି
ଅସୁମାର ସେ ବିଭୁ ବିଭୂତି ।

କେତେ ସୁରଭିତ ସ୍ମୃତି କାଳଗର୍ଭେ
ହୋଇଛି ବିଲୀନ
କେତେ ଶ୍ରଦ୍ଧା ମାନ ଅଭିମାନ,
କେତେ ସ୍ନିଗ୍ଧ ନିଷିଦ୍ଧ ଭାବନା
ଅପୂର୍ଣ୍ଣ ରହିଛି କେତେ କସ୍ତୁରୀ କାମନା ।
ପ୍ରୀତି ପ୍ରେମ ପ୍ରଣୟ ସମ୍ଭାର
ସାଇତି ରଖିଛି ସ୍ମୃତି ଅଭିଲେଖାଗାର ।
ଜୀବନର ଘୂର୍ଣ୍ଣୀମୟୀ ଘାତ ପ୍ରତିଘାତ
ଅକୁହା କଥାର କେତେ ଅଦେଖା ପ୍ରପାତ,
ସ୍ୱପ୍ନଭୂମେ ସେ ଦ୍ୱିତୀୟା ଜହ୍ନର ମୁରୁଜି
ଲିଭିଲେ ବି, ଲିଭି ପାରିବକି ।।
ସବୁ ତହିଁ ହୋଇଛି ସାଇତା
ଜୀବନେ ଦେଉଛି ନିତି ବିପୁଳ ବାରତା,
ନିବେଦନ କରିବାକୁ ସବୁ
ସୁଯୋଗ ଦିଅନ୍ତି ସଦା ପ୍ରେମମୟ ପ୍ରଭୁ ।

•

୩୯

# ରହୁ କିଛି ଅଜ୍ଞାତ ଜୀବନେ

ରହୁ କିଛି ଅଜ୍ଞାତ ଜୀବନେ
କିଛି ରହୁ ଅନ୍ଧକାର, ଆଲୋକ ଭୁବନେ,
ସବୁ ସତ୍ୟ ନହେଉ ପ୍ରଘଟ
କିଛିଟା ଅଜ୍ଞାତ ରହୁ କିଛି ଅପ୍ରକଟ ।

ନ ଉଛୁଳୁ ଶ୍ରଦ୍ଧା ନଈ ନଲଂଘୁ ତା' କୂଳ
ରହୁ ତାହା ପୂର୍ଣ୍ଣଗର୍ଭା ସଲିଳେ ସଲୀଳ ।
ହେଉତା' ହୃଦୟ ସଦା ଆବେଗେ ଆପ୍ଳୁତ
ଭାବମୟ, ମଧୁମୟ, ପ୍ରେମ ପରିପ୍ଳୁତ
ଅବବୋଧ ଅଜ୍ଞାତ କିଛି
ରହି ଯାଉ ତୋଳିବାକୁ ତାରୁଣ୍ୟର ବୀଚି ।

ଆକାଶେ ନ ଆସେ ସଦା ପୂର୍ଣ୍ଣିମା ରଜନି
ଅମା ଅନ୍ଧକାର ମଧ୍ୟ ଘୋଟେ ଏ ଅବନି,
ଏହା ଯଦି ପ୍ରକୃତିର ମଙ୍ଗଳ ବିଧାନ
ମଣିଷ ଜୀବନେ କିଆଁ ହେବ ତା'ର ବୃଥା ବ୍ୟତିକ୍ରମ ।

ଦୃଶ୍ୟମୟ ଏ ଜଗତେ କିଛି ଦୃଶ୍ୟ ରହୁ ଅନ୍ତରାଳେ
ସ୍ତରୀଭୂତ ବିସ୍ମୟର ସୀମାହୀନ ଅତଳ ଗହ୍ୱରେ,
ସମାଧାନ ଅପେକ୍ଷାରେ କିଛି ପ୍ରଶ୍ନ ରହୁ କାଳାତୀତ
କ୍ରିୟାଶୀଳ ହେବ ତେବେ ମଣିଷର, ଅଦ୍ୟ, ଭବିଷ୍ୟତ,
ରହୁକିଛି ଶଙ୍କା ଓ ସଂଶୟ
ଏ ଜୀବନ ହେବା ପାଇଁ ଦୀର୍ଘ ଲୀଳାମୟ ।

ନଈପାଣି କ୍ଷୀଣଧାରେ, ନୂଆପାଣି ମିଶେ ଆସିପୁଣି
ନୂଆ ପୁରୁଣାର ଏତ ଭାବରୂପ ପ୍ରୀତି ରୂପାୟନୀ,
ସଂଶୟ ଓ ସମାଧାନେ ରହୁ ଜଟିଳତା
ଏ ଜୀବନ କୋଳାହଳେ, ରହୁ ମଧ୍ୟ କିଛି ନୀରବତା ।

•

୪୦

# ଧୂଳି ଉତ୍ସବ

ଧୂଳିର ଶରୀର ଧୂଳିରେ ମିଶିବ
ନିରାଶବାଦର ଛାୟା
ସାରା ଜଗତକୁ ଆବୋରି ରଖିଛି
ଭ୍ରମର ଏ ମହା ମାୟା ।

ଜୀବନ ରସରେ, ହରିତ ହସରେ
ଭିଜିଛି ଏ ଧୂଳି ମାଟି
ପରାଣ ଜ୍ୟୋତିରେ, ପରମ ଦ୍ୟୁତିରେ
ପୁଲକିତ ପ୍ରେମ ପ୍ରୀତି,
ମହା ଜାଗତିକ ଧାରା
ଏ' ବିଶ୍ୱବୁକୁରେ ମହାଶକ୍ତି ହୋଇ
ପ୍ରବାହିତ ହୁଏ ପରା ।

ସୁଖ ଦୁଃଖ ଏଥି ସଂଜ୍ଞା ହରାଇ
ହୋଇଥାନ୍ତି ଭେଟା ଭେଟି,
ସମର୍ପଣର ସଙ୍ଗୀତ ଗାଇ
ଯାଆନ୍ତି ଧୂଳିରେ ଲୋଟି
ଏ ଧୂଳି ପାଲଟେ ପାବନ ପ୍ରଭାସ ତୀର୍ଥ
ଆଖି ପିଛୁଳାକେ ବଦଳି ଯାଏ ତା' ନିରାଶବାଦର ଚିତ୍ର ।

ମଣିଷର ଏଇ ସାରା ଜୀବନଟା
ଧୂଳି ଉତ୍ସବ ଲୀଳା,
ସୁଖ ଦୁଃଖର ମନ୍ତ୍ରେ ଧ୍ୱନିତ
ଧୂଳିର ଯଜ୍ଞଶାଳା ।
ଜୀବନକୁ ଏଥି ଆହୁତି ପକାଏ ଜୀବ
ଏହା ଚାଲିଥିବ ଅନନ୍ତ କାଳ
ସୃଷ୍ଟି ଯେଯାଏ ଥିବ ।

•

## ୪୧

# କ୍ଷମା

କ୍ଷମା ଅଟଇ ସଦା କ୍ଷମତାଭରା
ଅକ୍ଷୟ ଭଣ୍ଡାର ତା' ନ ସରେ ପରା,
ସେ ହରି ନେଇପାରେ ନିଖିଳ ମନ
ସ୍ନିଗ୍ଧ ମଧୁ ମୋହନ ତା' ଅପଘନ ।

ଅଟଇ ଶକ୍ତ ତା'ର ବନ୍ଧନ ଡୋରି
ତୁଟାଇ ପାରେ ନାହିଁ କେ ସ୍ୱେଚ୍ଛାଚାରୀ,
ଶକ୍ତିଶାଳୀର ଶକ୍ତି ଅଟଇ କ୍ଷମା
ଅପାର ଅଟେ ତାର ଦିବ୍ୟ ମହିମା ।

କ୍ଷମା ବନ୍ଧନେ ବନ୍ଧା ସାରା ଜଗତ
ଉତ୍‌ଥିତ ଅସି କରିପାରେ ସେ ନତ,
ଅଟନ୍ତି ବିଶ୍ୱବନ୍ଦ୍ୟ ଯେ କ୍ଷମାଶୀଳ
ମହାମାନବ ସାଧୁ ସନ୍ଥ ସକଳ ।

ମାତା, ପିତା, ଆଚାର୍ଯ୍ୟ କ୍ଷମା ବାରିଧି
କ୍ଷମାନୁରାଗ ଅଟେ ପ୍ରିୟ ପରିଧି,
ଏ ବିଶ୍ୱ ବୃକ୍ଷଲତା ଜୀବ ସକଳ
ସରବେ ଶ୍ରଦ୍ଧାମୟ ସେ କ୍ଷମାଶୀଳ ।

ଯେ ଅଟେ ସର୍ବହରା ବଞ୍ଚିତ ଜନ
ଶ୍ରଦ୍ଧା ସରାଗେ ଭରା ମଧ ତା' ମନ,
ସହ୍ୟ କରିଛି ତା'ର ଦୁର୍ଦ୍ଦଶା ଭାର
ତୋଳିନି କା ବିପକ୍ଷେ ରଣ ହୁଁକାର ।

ବିପ୍ଳବ ଉଗ୍ର ଉର୍ମି ତୋଳିନି ମନେ
ବିଦ୍ରୋହ ବହ୍ନି ଜାଳିନାହିଁ ଜୀବନେ,
ଭାଗ୍ୟକୁ କ୍ଷମା ଦେଇ, ରହିଛି ଶାନ୍ତ
ଭୋଗଇ ସୁଖ ସେ'ତ ବିଭବବନ୍ତ ।

ଅହିଂସା ମନ୍ତ୍ର ଶକ୍ତି କ୍ଷମାରେ ଭରା
କ୍ଷମା ଅଟଇ ଶାନ୍ତି ସାଗର ପରା,
ଉଠେନି ଉଗ୍ରତାର ଉର୍ମି ଉତ୍ତାଳ
ଚିର ପ୍ରଶାନ୍ତିମାର ପବିତ୍ର ସ୍ଥଳ
ଚିରନ୍ତନ ଏ ବିଧି,
ଅଟନ୍ତି ସ୍ୱୟଂ ପ୍ରଭୁ କ୍ଷମା ବାରିଧି ।

•

୪୨

# ଭୋଗ ଭୂମି

ରହସ୍ୟମୟ ସେହି, ଶୂନ୍ୟତା ଛାଇ
ଘେରିଛି ମୋ' ଅନ୍ତର
ବିପୁଳ ବ୍ୟାପ୍ତି ତା'ର
ଲମ୍ବିଛି ମହାଶୂନ୍ୟ ଛୁଇଁବା ପାଇଁ,
ରହସ୍ୟମୟ ସେହି ଶୂନ୍ୟତା ଛାଇ ।

ଭରିଛି ଭଣ୍ଡାର ମୋ ପାର୍ଥିବ ପଣେ
ଜୀବନ କୋଳାହଳ ଆତ୍ମୀୟ ଜନେ,
ସ୍ନେହ, ଶରଧା, ପ୍ରୀତି
ସୁଖ, ଦୁଃଖର ଗୀତି,
ସରବେ ଏକାକାର ମୋହିତ ମନେ
ଭରିଛି ଭଣ୍ଡାର ମୋ' ପାର୍ଥିବ ପଣେ ।

ଶୁଭେନି ଭୋଗ ଭୂମେ ସ୍ୱସ୍ତିବାଚନ
ଅନୁଚ୍ଚାରିତ ବିଧି ଅନୁଶାସନ,
ଶୁଭଇ ସ୍ୱାହା, ସ୍ୱାହା
ଅତୃପ୍ତି ଯଜ୍ଞ ଦୁହା,
ପ୍ରାଚୁର୍ଯ୍ୟେ ଅନୁଭୂତ ରିକ୍ତତା ଘନ,
ଶୁଭେନି ଭୋଗଭୂମେ ସ୍ୱସ୍ତିବାଚନ ।

ପୂର୍ଣ୍ଣତା ପୂର୍ଣ୍ଣିମାରେ, ଶୂନ୍ୟତା ସଭା
ସତେବା ମହାରୂପେ ହୋଇଛି ଉଭା,
ସବୁ ଗ୍ରାସିବ ବୋଲି କରିଛି ପଣ
ଏ' ପରା ଚିରନ୍ତନ ବିଧି ବିଧାନ,
ଯଦି ଶୂନ୍ୟତା ସାର
କାହିଁକି ପ୍ରାଚୁର୍ଯ୍ୟର ଏ' ଦରବାର ? ?

•

୪୩

# ମୁଁ ବାମନ ବଟ

ତୁଳସୀ ଚଉରା ମୂଳେ, ମୁଁ ବାମନ ବଟ
ବନସ୍ତର ମହାଦ୍ରୁମ, ଭୋଗୁଛି କଷଣ ଯମ
ବିଶାଳତା ହରାଇ ମୁଁ
ହୋଇଗଲି ଛୋଟ
ମୁଁ ବାମନ ବଟ ।

ଧର୍ମଦ୍ରୋହୀ ଏ ମଣିଷ ନିତି କରେ ପୂଜା,
ଚୁଳେ ଚୁଳେ ପାଣିଦେଇ, ପତ୍ରରେ ସିନ୍ଦୂର ନାଇ
ଫୁଲ ଧୂପ ଦୀପ ଦେଇ
ଉଡ଼ାଏ ସେ ଧ୍ୱଜା
ନିତି କରେ ପୂଜା ।

ଖଣ୍ଡିତ କରିଲା କାଟି ମୋର ଚେର ମୂଳ
ପ୍ରାକୃତିକ ବିଶାଳତା, କରିଦେଲା ଚୂର,
'ବୃକ୍ଷରାଜ' ସମ୍ମାନ ସେ କରିଲା ଲୁଣ୍ଠନ
ଦଳି ଦେଲା, 'ଦ୍ରୁମରାଜ' ଦର୍ପ ଅଭିମାନ
ଧିକ୍ ତାର ଦୃପ୍ତ ଅହମିକା,
ହୃଦୟ ତା' ଲେଲିହାନ ଶିଖା ।

ମୋ ଶାନ୍ତି ଶୀତଳ ଛାୟା
ମିଳିବନି କ୍ଳାନ୍ତପଥିକରେ
କିଚିରି ମିଚିରି ଶବ୍ଦ
ଶୁଭିବନି ମୋ ପତ୍ର ଗହଳେ,
ପକ୍ଷୀମାନେ ଆସିବେନି ଉଡ଼ି
ନୀଡ଼ ମୁହାଁ ବଗମାନେ
ବସିବେନି ଡ଼େଣା ଝାଡ଼ି ଝାଡ଼ି ।

ଦିନ ବେଳେ ବାଦୁଡ଼ିଏ
ଝୁଲି ବେନି ମୋ' ଡାଳରେ ଆଉ
ଦୂର ବନୁ ଉଡ଼ି ଆସି
କରିବେନି କାଆ-କାଆ, କାଉ,
ଗୁଣ୍ଡୁଚିଏ ରଚିବେନି ବାସର ଆସର
ମୋ ଓହଳେ ଖେଳିବେନି ଦୋଳି, ପିଲାଦଳ।

ଉଡ଼ିଆସି ମହୁମାଛି କରିବେନି ଘରା
ବାଘୁଆ ସାତଫେଣିଆ ମେଲାଇ ପସରା,
ଗାତ ଖୋଳି ରହିବେନି, ବିଲୁଆ ମୋ' ତଳେ
'ହୁକେ ହୋ' ଶୁଭିବନି ମୁହଁ ସଞ୍ଜ ବେଳେ
ସରିଗଲା ସବୁ ଲୀଳା ଖେଳା,
ଉଭା ହେବେନି ମୋ' ମୂଳେ ମଙ୍ଗଳା ହିଙ୍ଗୁଳା।

ବ୍ରହ୍ମରାକ୍ଷସ ଆସି, ମୋ ଡାଳରେ ବସି
ଭୟ ସେ ସଂଚାରିବନି ବିକଟାଳ ହସି,
ଚଣ୍ଡୀ ଓ ଚାମଣ୍ଡା ତୋଳିବେନି କାଳ ରଡ଼ି
ପରାଜିତ ରାଜନ ମୁଁ, ଗୋଡହାତେ ବେଡ଼ି
ବୃନ୍ଦାବତୀ ମୂଳେ,
ବଞ୍ଚିଥିବି ଖାଇ ଖାଲି ପାଣି ଚୁଳେ ଚୁଳେ।

ମୋ ଛାଇରେ ବସିବନି ଗାଁର ନିଶାପ
ଧୁଆ ଧୋଇ ହେବନାହିଁ ସବୁ ପାପତାପ,
ମୋତେ କରି ବାମନ ପାଦପ,
କି ଲାଭ ପାଇଛୁ କହ ରେ ମୂଢ଼ ମାନବ!
ଦେଖାଉତୁ ବହପ ବଢ଼େଇ
କାଳ ଦିନେ ନେବରେ ଛଡ଼େଇ।

•

## ୪୪

# ରହସ୍ୟ

ରହସ୍ୟ ଗନ୍ତାଘର
ଅଟେ ବିଶ୍ୱ ସଂସାର
ଏଡ଼େ ସୁନ୍ଦର ଦିଶେ ଅବୋଧ୍ୟ ବୋଲି,
ଆକାଶେ ସୂର୍ଯ୍ୟ ଚନ୍ଦ୍ର
ଗ୍ରହ ତାରକା ବୃନ୍ଦ
ସୁନ୍ଦର, କିଛି ବୁଝା ଅବୁଝା ଖାଲି ।

ଦିଶେ ବିଶ୍ୱ ପ୍ରକୃତି
ଭବ୍ୟ ସୁନ୍ଦର ଅତି
କିଛିଟା ଜଣା ଆଉ କିଛି ଅଜଣା,
କିଛି ରହସ୍ୟମୟ
ଅଜ୍ଞାତ ଅତିଶୟ
ତଥାପି ସୌନ୍ଦର୍ଯ୍ୟ ତା' ନହୁଏ ଊଣା ।

ଅନନ୍ତ ବିହାୟସ
ଅଟେ ଭରା ରହସ୍ୟ
ତଥାପି ତାହା ଏକ ସୌନ୍ଦର୍ଯ୍ୟ ଖଣି,
ରହଇ ଆଖି ଲାଖି
ଅବୋଧ୍ୟ ରୂପ ଦେଖି
ତାହାକୁ ଅତିପ୍ରିୟ ନିଜର ମଣି ।

ରହସ୍ୟ ରହିଯାଉ ରହସ୍ୟ ହୋଇ
ସୌନ୍ଦର୍ଯ୍ୟ ଲୋଟୁଥାଉ ତା ବୁକୁ ଛୁଇଁ,
ରହିବ କବି ଚାହିଁ
ରୂପରେ ମଗ୍ନ ହୋଇ,
ସୌନ୍ଦର୍ଯ୍ୟ ଜୟଗାନ ଉଠିବ ଗାଇ
ରହସ୍ୟ ରହିଯାଉ ରହସ୍ୟ ହୋଇ ।

•

## ୪୫

# ମହାଭ୍ରାନ୍ତି

ଦିନଥିଲା, ହେ ଦେବତା ଗନ୍ଧର୍ବ ଗଣ !
ଘୂରୁଥିଲ ସ୍ୱଚ୍ଛନ୍ଦରେ ଏ' ଘନ ବନ,
ଏ' ବିଶ୍ୱ ଭୁବନ ।

ତୁମକୁ କରିଛି ଆଜି ନିର୍ବାସିତ
ଏ' ମାନବ ଜାତି,
ପଠାଇ ଦେଇଛି ସ୍ୱର୍ଗେ ରଖି ତୁମ,
ଅଲିଭା ସେ ସ୍ମୃତି
ଅଛ ତୁମେ ତା' ଚିତ୍ର କଳାରେ
ମୂର୍ତ୍ତିମାନ କଳା ସାହିତ୍ୟରେ,
ଅଶରୀରୀ ଚିତ୍ର କକ୍ଷ ନେଇ
ଶ୍ରଦ୍ଧା ପାଇଁ ସ୍ମୃତିଟିକେ ଦେଇ ।

ଏ' ମର୍ତ୍ତ୍ୟରେ ଥିଲା ଦିନେ ପୁଷ୍ପ ଭରା ନନ୍ଦନ କାନନ
ଥିଲେ ଏଥି ରୂପବତୀ ମଧୁମତୀ ଅପ୍‌ସରା ଗଣ,
ଫୁଟୁଥିଲା ନିତି ନିତି ମଧୁଗନ୍ଧା ପ୍ରୀତି ପାରିଜାତ
ନର୍ତ୍ତକୀ ପରୀର ନୃତ୍ୟେ ଛନ୍ଦାୟିତ ପାହାଡ଼ ପର୍ବତ
ମଧୁମୟ ସଙ୍ଗୀତର ଝର,
ଝରୁଥିଲା ନିକ୍ୱଣ ନୂପୂର,
ପ୍ରେମାମୋଦେ ଗନ୍ଧର୍ବ ଯୁବକ
ଲେପି ଦେଉଥିଲେ ଆସି, ପ୍ରୀତିଭରା ଶୃଙ୍ଗାର ତିଳକ ।

ଏ' ମର୍ତ୍ତ୍ୟରେ ନାହିଁ ଆଜି ସେମାନଙ୍କ ନିତ୍ୟ ଲୀଳା ଖେଳା
କାଞ୍ଚନିକ ସ୍ୱର୍ଗେବାସ, ଶାନ୍ତିମୟ ଯା' ଶୋକପାସୋରା
ପ୍ରେମମୟ ଅମର ଭୁବନ,
ଦିବ୍ୟ ଦେବଭୂମି ତା'ର ଶୁଚିଶୀଳ ଶାନ୍ତ ତପୋବନ ।
ବାସଭୂମି ପୃଥିବୀକୁ ଏ' ମଣିଷ କଲା ହତଶିରୀ
ପ୍ରକୃତିକୁ ଉଜାଡ଼ିଲା ମନେ ତା'ର ମହାଭ୍ରାନ୍ତି ଭରି ।

•

୪୬

# ଭାବ ଓ ଭାଷା

ଭାବ ଅନନ୍ତ, ଭାଷା ଅଟେ ସୀମିତ
ବିଶ୍ୱ ଭୁବନ ଭାବଭୂମି ପ୍ରଶସ୍ତ,
ଆକାଶେ ତାରା ବୀଥି ଭାବରେ ବଶ
ଭାବ ମୋହିତ ମନ ତା' ହସ ହସ
ଭାଷା ନିରବ ତହିଁ,
ବହେ ଭାବର ନଈ ।

ଉଦିତ ସୂର୍ଯ୍ୟଙ୍କର ଲୋହିତ ରାଗ
ଅଟଇ ଭାବମୟ ଶ୍ରଦ୍ଧା ସରାଗ,
ଭରିଯାଏ ତା' ଛୁଇଁ ନିଖିଳ ମନ,
ଶ୍ରଦ୍ଧା ଭାବରେ ସର୍ବେ କାଟିବେ ଦିନ,
ଭୁଲି ସକଳ ବ୍ୟଥା
କହେ ହୃଦୟ କଥା ।

ନିରବ ଭାବନେଇ ବହଇ ଝର
ଭାବ ବିହ୍ୱଳ ହୋଇ ବହେ ସମୀର,
ଆସଇ ଋତୁଚକ୍ର ଭାବରେ ଭଳି
କରିବ ଭାବମୟୀ ପ୍ରକୃତି ବୋଲି,
ସର୍ବେ ଭାବରେ ବଶ
ସଦା ଭାବରେ ତୋଷ ।

ପ୍ରାଗାଢ଼ ସେହ୍ନ ଶ୍ରଦ୍ଧା ଭାବରେ ଭରା
ପାରେନା ବ୍ୟକ୍ତ କରି ଭାଷା ପସରା,
ଭାବ ଆବେଗ, ବୋହି ପାରେନା ଭାଷା
ପ୍ରକାଶେ, ଅପ୍ରକାଶ୍ୟ ରହେ ତା' ଆଶା
ସ୍ନିଗ୍ଧ କୋମଳ ଭାବ,
ଅବ୍ୟକ୍ତ ଅନୁଚ୍ଚାରିତ ପ୍ରେମାନୁରାଗ ।

•

## ୪୭

# ଜୀବନ ପୃଷ୍ଠା

ନବ ଜାତ ଶିଶୁ ରୂପେ
ଯେବେ ଦେଲି ଦେଖା
ଏ' ଜୀବନ ପୃଷ୍ଠା ଥିଲା
ଅଲେଖା....ଅଲେଖା,
ଯଥା ଶୁଭ୍ର କାଗଜ ଫରଦ
କି' ସୁନ୍ଦର ଦିଶୁଥିଲା ଭବ୍ୟ ପରିଚ୍ଛଦ ।

ବାଜିଲା ପବନ ତହିଁ
ଲେପି ଦେଲା ଧୂଳି
ସେ ଶୁଭ୍ର ଚେହେରା କାହିଁ
ଗଲାତ ମଉଳି,
ରତୁ ଚିତ୍ରେ ଚିତ୍ରିତ ଭୂଷିତ
ଶତ ଚିହ୍ନେ ବୁକୁ ତା'ର ହୋଇଲା ଚର୍ଚ୍ଚିତ ।

ବୟସ ବଢ଼ିଲା କ୍ରମେ
ସ୍ମୃତି ରେଖା ଟାଣି
ଆଙ୍କି ହୋଇଗଲା ତହିଁ
କ୍ଷତ ଚିହ୍ନ ପୁଣି,
ଅସୁମାର ଘଟଣା ସ୍ୱାକ୍ଷର
କରିଦେଲା ପୃଷ୍ଠାଟିକୁ ପୁଣି କଦାକାର ।

ହଠାତ୍ ଆସିଲା କିଏ ରଙ୍ଗତୂଳୀ ଧରି
ସାରା ପୃଷ୍ଠାପରେ ଦେଲା ଧଳା ରଙ୍ଗ ବୋଳି,
ଶୁଭ୍ରତାର ହେଲା ଉତ୍ତରଣ
ସବୁ ଦାଗ ଲିଭିଗଲା ନିମିଷକେ ପୁଣ ।
ଜୀବନଟା 'ଦାଗ ଅଙ୍କା, ଦାଗ ଲିଭା' ଖେଳ
ସମୟର ସରୁବାଲି ତଳ ।

•

୪୮

# ମୃତ୍ୟୁ ଓ ପ୍ରେମ

ମୃତ୍ୟୁ ! ତୁମେ ଦୁର୍ବଳ ସତତ
ଛପି ଛପି ଆସି ସଦା
ଜୀବନକୁ କର କବଳିତ ।

ତୋଳ ବିଶ୍ୱେ ଆତଙ୍କର ଛାୟା
ବିସ୍ତାରି ତୁମର ସେଇ ଭୟଙ୍କର କାୟା,
ଏହା କ'ଣ ବୀରତ୍ୱ ତୁମର ?
ଶଙ୍କାଗ୍ରସ୍ତ କରିଥାଅ ସର୍ବେ ନିରନ୍ତର ।

ଆସ ତୁମେ ଅବେଳରେ ଲଙ୍ଘି କ୍ରମିକତା -
ବାଲ୍ୟ, ଶୈଶବ, କୈଶୋର, ଯୌବନ, ଜରତା
ବାର ନାହିଁ କଞ୍ଚା ଓ ପାଚିଲା,
ଯାହା ତୁମ ମୁହଁରେ ପଡିଲା
ନିଅ ତା' ଛିଣ୍ଡାଇ,
ଭୀରୁତାର ପରିଚୟ ଦେଇ ।

ତୁମଠାରୁ ବଳି ମୁହିଁ ଅଟେ ଶକ୍ତିଶାଳୀ
ମୁଁ ଅଟଇ 'ପ୍ରେମାବେଗ' ଖେଳେ ଲୁଚକାଳି,
ପ୍ରୀତିରାଗ ତୋଳିଥାଏ ହୋଇ ମୋହାଛନ
ତୁମ ପରି, ଭୟ ଭୀତ ନୁହେଁ ମୋର ମନ
ପ୍ରେମେ ହସି ହସି,
ତପ ମଗ୍ନ ଥାଏ ମୁହିଁ ପ୍ରେମିକ ତପସ୍ୱୀ ।

ଭରି ଅଛି ମୋ ମନରେ ଅମାପ ଶକତି
ପ୍ରେମ ଯଜ୍ଞେ ଦିଏ ମୁହିଁ ମୃତ୍ୟୁକୁ ଆହୁତି
ମୁଁ ତ ପ୍ରେମର ମୂରତି
ମୃତ୍ୟୁର ଅରାତି ।

•

## ୪୯

# ଦାରୁ ଦେବତା

ବହୁଛି ବନେ ଆଷାଢ଼ ବାତ
ଚାଲିଛି ମଧୁ ଉଛବ ଯାତ
ଆନନ୍ଦେ ତରୁ ତରୁଣୀ,
ପିନ୍ଧି ନବ ସବୁଜ ପାଟ
ହସନ୍ତି ହୋଇ କେଡେ ଉଚ୍ଚାଟ
ସ୍ୱପ୍ନଭରା ଚାହାଣି ।

ପାଖରେ ଅଛି ମନ୍ଦିର ଏକ
ଝରଣା ଝରେ ଝରାଇ ଗୀତ
ବର୍ଷୀୟସୀ ସେ ନିମ ତରୁ ମଉନେ
କେଉଁ କାଳରୁ ହୋଇଛି ଠିଆ
ତା' ଦେହ ମନ ମଳୟ ପିଆ
ପାଲଟି ଅଛି ସେ 'ମହାଦାରୁ' ଧିଆନେ ।

ପାଖରେ ଅଛି ଶାହାଡା ସଖୀ
ମନଟି ତା'ର ଯାଇଛି ଲାଖି
ସେ ଦାରୁ ଚାରୁ ଚରଣେ,
ଟେକୁଛି ଫଣା ଭୁଜଙ୍ଗମ
ବଲ୍ମିକରେ ରହୁଛି ପୁଣ
ସେ ମହାଦାରୁ ଶରଣେ ।

ସତେ କି ସିଏ ଜାଣିଛି, 'ନିମ'
ମଳୟେ ହେବ ସେ ଦାରୁଦ୍ରୁମ
'ପାବନ ମନ୍ତ୍ର' ପରଶେ
ହୋଇବ ଦିନେ 'ଦାରୁବ୍ରହ୍ମ'
ତା' ପ୍ରିୟ ସଖା, ସେ ତରୁ ନିମ
ହୃଦୟ ଭରେ ହରଷେ ।

'ବନଯାଗ'ର ଯାତ୍ରୀଗଣ
ଆସିଲେ ତହିଁ ବୁଲି ସେ ବନ
ଧ୍ୟାନରେ ଧ୍ୟାୟୀ ଶ୍ରୀଦାରୁ,
ସର୍ବ ଶୁଭ ଚିହ୍ନ ଦେଖି
ଆନନ୍ଦ ମନ, ସରବେ ସୁଖୀ,
ବନ୍ଦିଲେ ସେ ଶ୍ରୀଦାରୁ ।

କରିଲେ ତହିଁ ଦାରୁ ବରଣ
ଯଜ୍ଞ ପୂଜା ଦାରୁ ଶୋଧନ
ଛେଦନ ବିଧି ଆଚରି,
କରିଲେ ତାଙ୍କୁ ଭୂତଳଶାୟୀ
ଗଣ୍ଡିରୁ ଗଡ଼ି ଦେଲେ ଗଡ଼ାଇ
କରିଲେ ସବୁ ଶାଖା ପ୍ରଶାଖା, ପାତାଳି ।

ଶଗଡ଼ି କଲେ ଶ୍ରୀକ୍ଷେତ୍ର ପଥେ
ଚାଲିଲା ଶୋଭାଯାତ୍ରା ପଛେ
ଆନନ୍ଦ ନଈ ଉଛୁଳେ,
ଭକ୍ତି ଭୋଳେ ଭକତ ଗଣ
ଉଦ୍ଦଣ୍ଡେ ତୋଳି ନାମ କୀର୍ତ୍ତନ
ଭଜନ୍ତି ସର୍ବେ ଆକୁଳେ ।
ଦାରୁରେ ହେବେ 'ବ୍ରହ୍ମ' ପ୍ରବେଶ
ଘେନିବେ ଦାରୁ, ବ୍ରହ୍ମବେଶ
'ଜଗତ ନାଥ' ବୋଲାଇ,
ଘେନିବେ କଳେବର ନବୀନ
ହୋଇବେ ପ୍ରଭୁ ବିଶ୍ୱ ମୋହନ
ଭାବ ଭକତି ଖେଳାଇ ।
ଜଗତ ପତି 'ଜଗତନାଥ' ନାମରେ
ପୂଜିତ ହେବେ ଜଗଦେଶ୍ୱର
ରତନ ସିଂହାସନରେ ।

ଜନ୍ମ ମୃତ୍ୟୁ ଜଗତ ବିଧି ଆଚରି
ହୁଅଇ ତାଙ୍କ ଦେହାବସାନ,
କରନ୍ତି ନୂଆ ଦେହ ଧାରଣ
ଜଗତନାଥ ସେ ନୀଳାଚଳ ବିହାରୀ
ଜଗତ ବିଧି ଆଚରି ।
ଧନ୍ୟ ତୁମ ମରତ ଲୀଳା ପ୍ରଭୁ ହେ !
ରହସ୍ୟ କିଏ ପାରିବ ଭେଦି ଏ ଦେହେ ! ।

•

୫୦

# ପ୍ରତିଭା

ବିଶ୍ୱ ଉପବନେ,
ପ୍ରତିଭା କୁସୁମ କେତେ
ହୋଇ ପ୍ରସ୍ଫୁଟିତ,
ନୀରବେ ମଉଳି ଯାନ୍ତି
ବିଷାଦ ଲଗନେ
ଭୂପତିତ ହୁଅନ୍ତି ଅଦିନେ ।

ଯାହାକୁ ଦେଖିଛି ଦିନେ
ଥିଲା ଏକ ଉଜ୍ଜ୍ୱଳ ତାରକା,
ସିଏ ଆଜି ଅନ୍ତରୀକ୍ଷେ
ରିକ୍ତ ନୀହାରିକା,
ରଖିଛି ତା' ଅସ୍ତିତ୍ୱ ବଞ୍ଚାଇ
ବାଷ୍ପୀଭୂତ ଅସ୍ପଷ୍ଟ ସେ ହୋଇ ।

ଅବିଚାରେ ଅନାଦୃତେ, ଅସ୍ୱୀକୃତେ
ଚାଲିଅଛି ପ୍ରତିଭା ସଂହାର,
ପାଉନାହିଁ ଶିଳ୍ପି ତା'ର ନ୍ୟାଯ୍ୟ ଅଧିକାର
ପ୍ରତିଭା ତା' ଯାଉଚି ମଉଳି,
ହେଉଛି ବିଚାରା ଖାଲି
ବିକଳେ ବାଉଳି ।

ରାତ୍ରି ଘନ ଅନ୍ଧକାରେ
ସେ ପ୍ରତିଭାବନ୍ତ,
ତା' କ୍ଳାନ୍ତ ନୟନ ଅଟେ
ଘୁମନ୍ତ....ଘୁମନ୍ତ ।

ସ୍ୱପ୍ନଶେଯେ ଦେଖିଲା ବିହ୍ୱଳେ,
ଚାଲିଅଛି ଶୋଭାଯାତ୍ରା
'ସାମଗାନେ' ପଥ ତା' ଉଛୁଳେ ।

କା' ହାତେ ରହିଛି ବୀଣା
କା ହାତେ ଲେଖନୀ,
କେ' ଧରିଛି ରଙ୍ଗ ତୂଳି
କା' ପଦେ ଶିଞ୍ଜନୀ
କା'ହାତରେ ରହିଛି ନିହଣ
ସିଏ ସବୁ ରଚିଛନ୍ତି 'କଳା' ଉପବନ ।
ଏକ କଣ୍ଠେ କହିଲେ ସମସ୍ତେ,
"ଅନନ୍ତ ଯୌବନ ଆମ,
ଅମର ଜଗତେ ।
ମଉଳିବା ନୁହେଁ ଆମ ଧର୍ମ
ଆମେ ଅଟୁ ଅମଳିନ...
ଚିର ଅମଳିନ, ସୁଦୀପ୍ତ ମିହିର,
ଛୁଇଁକି ପାରିବ ପଥ ଘନ ଅନ୍ଧକାର ।
ଭ୍ରମେ ତୁମେ
ହେଉଅଛ ଘାରି
ପ୍ରତିଭାର ଜ୍ୟୋତି କେବେ
ନପାରେ ମଉଳି,
ଅଲୁପ୍ତ ସେ ଅଟେ ଚିରକାଳ
ସେଥିପାଇଁ ସୃଷ୍ଟିତାର ଅଟଇ ସୁନ୍ଦର
ଅଟଇ ସୁନ୍ଦର ।

•

## ୫୧

# ମୃତ୍ୟୁ

ସମସ୍ତେ ଆସନ୍ତି ଏଥି
ସର୍ବେ ଯାନ୍ତି ଚାଲି
କେହି ନ ଜାଣନ୍ତି କେବେ
ପଡିବ କା' ପାଳି,
ଏତ ନିୟତିର ଖେଳ
ପଠାଇ ଦିଏ ସେ, ଯେବେ
ହୁଏ ଯା'ର ବେଳ ।
ଶୁଣେ ନାହିଁ କାହାର କାକୁତି
କି କରାଳ ନିୟତି.....ନିୟତି ।

ଏଠାକୁ ଆସନ୍ତି ପୁଣି
କେତେ ଯୁଗଜନ୍ମା
ମରଣ ପାରେନି ପୋଛି
ତାଙ୍କର ମହିମା,
ଯଶ ଶରୀରରେ
ସେମାନେ ରହନ୍ତି ବଞ୍ଚି
ଏ' ବିଶ୍ୱ ସଂସାରେ ।
ମୃତ୍ୟୁ ନିଏ ପାର୍ଥିବ ଶରୀର
ସେତିକିରେ ତୃପ୍ତି ଲଭେ ସନ୍ତୋଷ ତାହାର,
ମୃତ୍ୟୁ ଭାବେ ସବୁଠାରୁ ଶକ୍ତିଶାଳୀ ସିଏ
ମାନବ ଯଶ ମହିମା
ଦର୍ପ ଭାଙ୍ଗି ଦିଏ ।

ମୃତ୍ୟୁ, ଶୁଣି କହେ ହସି ହସି
"ଶୁଣ ଭାଇ ହେ ମରତବାସୀ !
ଆପେ ଆପେ ଆସେ କି ମୁଁ
 ମୋ' ଇଛାରେ କେବେ,
ଆସଇ ବ୍ୟାକୁଳ ଭାବେ
 ଲୋଡା ହୁଏ ଯେବେ ।
ବିଳମ୍ବ ହୋଇଲେ, ମୁହିଁ
 ଖାଏ କେତେ ଗାଳି,
ମୋ ନିନ୍ଦାକୁ କରିଅଛ କିଂପା ଜପାମାଳି !
ଆକସ୍ମିକ ଆସେ ଯେବେ,
 ବିଧିର ତା' ଅଲଘଂ ଆଦେଶ
ପାରିବି କି ଅତିକ୍ରମ କରି କେବେ
 କରିଲେବି ଆପ୍ରାଣ ପ୍ରୟାସ ।
 ମୃତ୍ୟୁ ନୁହେଁ ଭୟଙ୍କର କଦା
ଜୀବନର ପୂର୍ତ୍ତି ପାଇଁ ଶୁଭଙ୍କର ସଦା ।

•

## ୫୨

# ସ୍ୱପ୍ନମୟୀ

ସେଦିନ ଗୋ ସ୍ୱପ୍ନମୟୀ
ଆସିଥିଲ ସପନ ଶଯ୍ୟାରେ,
ପାଶେ ଆସି ବସିଥିଲ
ଦୂରେଇ ଲଜ୍ଜାରେ
ହତବାକ୍ ହୋଇଗଲି ମୁହିଁ,
କିପରି କହିବି ସତେ
'ତୁମକୁ ମୁଁ ଚିହ୍ନି ପାରୁନାହିଁ '
ଗୋ' ଲାବଣ୍ୟମୟି !

ହସି ହସି ପଚାରିଲି,
କୁଶଳତ ସବୁ ?
ଉତ୍ତରିଲା ଲାସ୍ୟମୟୀ,
"ମୁଁ ଚକୋରୀ ଜ୍ୟୋତ୍ସ୍ନାପାୟୀ
ସଖା ମୋର ସବୁ ସୁଖ-
ମୋ' ଚନ୍ଦ୍ରମା, ସିଏ ମୋର ପ୍ରଭୁ ।
କବି ତୁମେ ଅଛତ କୁଶଳେ ?
ଭୁଲିଛି ସମସ୍ତ ଦୁଃଖ ତୁମ ଦର୍ଶନରେ ।

କବି ! ମୁଁ ତୁମର କବିତା ସଙ୍ଗିନୀ
ରହିଛି ତୁମରି ପାଶେ
ମଣ୍ଡିଛି ଲେଖନୀ,
ତା' ମଧ୍ୟରେ ମୁଁ ରହିଛି ଲୁଚି
ମୋର ସେଇ ଭାବରୂପ ଶୁଚି ।

ପାନ କରୁଅଛି ନିତି
ତା' ମଧୁରୁ ମୋ' ପ୍ରୀତି ମଦିରା
ଭରି ତୁମ ପ୍ରାଣର ପିଆଲା ।
ଏବେ ଚିହ୍ନିଲକି ??
ସଖା ! ମୁଁ ତୁମ 'ବଲ୍ଲକୀ'
ପୂର୍ବ ଜନ୍ମ ଜାୟା,
ଭେଟିବାକୁ ଧରି ଅଛି ସ୍ୱପ୍ନ ରୂପଛାୟା ।

ତୁମ ପାଶେ ନିତି ନିତି ଆସେ
ଭାବରେ ଭସାଇ ଦେଇ
ଫେରି ଯାଏ ପ୍ରୀତି ପରିତୋଷେ ।
ଯାଉଛି ଏଥର,
ଆସିବି ଆସିବି ସଖା !
ତୁମେ ଯେବେ ଥିବ ସ୍ୱପ୍ନାତୁର ।"

ସ୍ୱପ୍ନ ମୋର ସରିଯାଏ
ପାହିଯାଏ ରାତି,
ମନରୁ ଲିଭି ନଥାଏ
ସେ ସ୍ୱପ୍ନର ତାତି ।
ନୟନରେ ମୂର୍ତ୍ତିମନ୍ତ
ସେ ଲାବଣ୍ୟ ରୂପ
ଜନ୍ମ ଜନ୍ମାନ୍ତର ପ୍ରିୟା
ଆତ୍ମୀୟ ସ୍ୱରୂପ ।
ସେ ମହା ବନ୍ଧନ
ଦୀପ ଜ୍ୟୋତି, ସଦା ଅନିର୍ବାଣ ।

•

## ୫୩

# ଆମ ଗାଁ

'ଭୁଗୁରା' ମୁଣ୍ଡିଆ, 'ଚେମିଟି' ମୁଣ୍ଡିଆ
  ପିଠିଆ ଉଠିଆ ଦି' ଭାଇ,
ପର୍ବତ ନୁହନ୍ତି ମୁଣ୍ଡିଆ ହୋଇ
  'ମହିଧର' ନାମ ଛନ୍ତି ପାଇ,
  ଆମ ଗାଁ ଏକପଡା ବୋଲି
ସଭିଏଁ କହନ୍ତି, 'ମହିଧର ପଡା'
ଛୋଟ ପଲ୍ଲୀଟିଏ, ଛୋଟ ପଲ୍ଲୀ ।

ତିନି ଭାଇ ପରି ତିନି ଗାଁ ଛନ୍ତି ପାଖେ ପାଖେ
ଏକ ମନ ହୋଇ ଚଳନ୍ତି ତିନିଏ ସୁଖେ ଦୁଃଖେ,
'ମରଣ୍ଡା' ବଡ଼ ମଝିଆଁ ଅଟଇ 'ତାଳପଦା'
ଗେଲବସରିଆ ସାନଭାଇ 'ମହିଧର ପଡା' ।
  ପାହାଡ ତଳିଆ ଗାଁ ସବୁ,
ବଡ଼ ବରଷାରେ ପାଣି ପଶିଯାଏ
  ଗାଁ ଦାଣ୍ଡ ହୁଏ ଉବୁଟୁବୁ ।

ସଂଧ୍ୟା ହୋଇଲେ ବିଲୁଆ ବୋବାଏ
ହୁକେ...ହୋ, ହୁକେ...ହୋ, କରି ଗଡ଼ି,
ମା କୋଳେ ପିଲେ ମୁହଁକୁ ଲୁଚାନ୍ତି
ମିଟି ମିଟି ଆଖି ଶୋଇପଡ଼ି ।

ବିଲୁଆ ବୁଲନ୍ତି ମଶାଣିରେ
ପାଟିରୁ ଆଲୁଅ ଝରେ, ଝରେ,
ପିଲାଙ୍କୁ କହନ୍ତି ମାଆ ମାନେ
ଗାଁ ବୁଲୁଚନ୍ତି ମଶାଣିଚଣ୍ଡୀ
ଶୋଇପଡ଼ ପିଲେ ତୁନ୍ ତାନେ ।
ତୁନ୍ ତାନେ ।

ଆମ ଗାଁ ପାଖେ ବହୁଅଛି ଏକ
ପାହାଡି ଝରଣା କୁଳୁକୁଳୁ,
ବନ୍ୟା ଆସିଲେ ନିମିଷକେ ହୁଏ ଟୁଳୁ ଟୁଳୁ,
ଧୀରେ ଧୀରେ, 'ବଢ଼ି' ଯାଏ ଛିଡି
ପାରି ହେଉ ଆମେ ଚାଲି ଚାଲି ।
ସାରା ବରଷ ସେ ଶୋଏ ନାହିଁ
ଚାଲିଥାଏ ନିତି କୁଳୁ କୁଳୁ କୁଳୁ ଗୀତ ଗାଇ ।

ଗାଁ ପାଖେ ଅଛି
ବିରାଟ ବିସ୍ତୃତ ବରଗଛ
ଅଶ୍ୱତ୍‌ଥ.....ବର....ଆଗପଛ,
'ବ୍ରହ୍ମରାକ୍ଷସ' ବସା କରିଥାଏ ବରଡାଳେ
ଓସ୍ତଗଛକୁ ଲମ୍ୱାଇ ଗୋଡ଼ କଡପାରେ,
ସଞ୍ଜ ନଇଁଲେ ବାଟୋଇ ହାଟୋଇ
ସେଇବାଟେ ଡରି ଯାଆନ୍ତିନି,
ହାତରେ ଥିଲେ ବି ଆଲୁଅ ତାଙ୍କର
ଭୟରେ ସେ ପାଦ ବଢ଼ାନ୍ତିନି ।

ଗାଁ ପାଖେ ଅଛି ଆମ୍ବ ତୋଟା
ଗହଳ ଚହଳ ଦିନ ଗୋଟା,
"ଚେରେଇ, ବେଲେଇ, ସପୁରି, ସିନ୍ଦୁରୀ",
ଏଇପରି କେତେ ଡାକ ନାମ,
ଆମ୍ବଗଛର ନାମ ଅନୁସାରେ ଗୁଣଗ୍ରାମ ।
ତୋଟାର ଗହଳ ଛାଇ ତଳେ
ବରଷ ତମାମ ସଭା ବଇଠକି
ମେଳା ମଉଛବ ସେଠି ଚାଲେ
ସଞ୍ଜବେଳେ ।,
କୀର୍ତ୍ତନିଆ ଦଳ ଖୋଳ କରତାଳ ମାଡ଼ ଚାଲେ ।

ତୋଟାଟା ଗାଁର କୋଟ୍ କଚେରି
ସଭାଘର,
ଦଫା ରଫା ହୁଏ ମାଲି ମକଦମା
ନିୟାୟ ନିଶାପ ବାରବାର ।
ଗାଁ କୋଠଘରେ ପଢ଼ାଯାଏ ନିତି
ପୁରାଣ, ଭାରତ, ଭାଗବତ,
ଖଞ୍ଜଣି ମାଡ଼ ଚାଲିଥାଏ ତହିଁ
ଗାଇ ଗାଇ ଭୀମଭୋଇ ଗୀତ ।
ମନ ସମସ୍ତଙ୍କ ଖୋଲା ମେଲା
ଆନନ୍ଦରେ ସବୁ ମତୁଆଲା....ମତୁଆଲା ।

ବରଷକେ ଥରେ ମାଛ ମରା ହୁଏ
ଆମ ଗାଁ କୋଠ ପୋଖରୀରୁ
କଣ୍ଡିଆ, କେରାଣ୍ଡି, ଶେଉଳ, ମାଗୁର
ପୋହଳା, ଚିଙ୍ଗୁଡ଼ି ସରୁ ସରୁ ।
ଯେତେ ଘର ଅଛି ସେତେ ଭାଗ
ବଣ୍ଟା ହୋଇଯାଏ, କାହାର ନଥାଏ ରୋଷ ରାଗ ।

ଆମ ଗାଁ ଦେଉଳ ପାଖେ ବହିଯାଏ
ପାହାଡି ଝରଣା ଏକ
ସଞ୍ଜ ହୋଇଲେ ଚହଳ ପଡ଼ଇ
ବାଜଇ ଘଣ୍ଟ ଶଙ୍ଖ,
ଯିଏ ଯେଉଁଠାରେ ଥାଆନ୍ତୁ ପଛକେ
ସବୁ କାମ ଧାମ ଛାଡ଼ି ଦେଇ,
ସମସ୍ତଙ୍କ ମନ ଭକ୍ତି ଉଚ୍ଛୁଳା
ପ୍ରଣମନ୍ତି ସିଏ ମୁଣ୍ଡ ନଇଁ ।

ଫଗୁ ଦଶମୀଠୁ ଚାଚେରୀ ବୁଲଇ
ଘରକୁ ଘର
ବିମାନେ ବୁଲନ୍ତି ଦୋଳ ଗୋବିନ୍ଦ
ପ୍ରଭୁ ଠାକୁର,
ଲଉଡ଼ି ଖେଳନ୍ତି ଗୋପାଳ ପିଲା
କେଡ଼େ ଅଭୁଲା ସେ ଲଉଡି ଲୀଳା ।
ସମସ୍ତେ ଖେଳନ୍ତି ହୋଲି
ହୋଇ ଫଗୁ ବୋଳା ବୋଳି ।

ଦୁଆରେ ପଡିଲେ ସୋରି ସୋରି ଜହ୍ନ
ଉଭଳା କିଶୋରୀ ମନ,
ସମସ୍ତେ ଖେଳନ୍ତି ପୁଚି ଖେଳ ଗାଇ
'ଚିକ୍ ଚିକେଇ ଗାନ' ।
ଅପାସୋରା ସେଇ ଛବି
ବର୍ଣ୍ଣି ପାରେନି କବି ।

ସବୁ ମଉଜର ପସରା ମେଲେଇ
ଦୁଆରେ ଆସଇ ରଜ,
ଗାଁ ହୋଇଯାଏ ଦୋଳିମୟ ଖାଲି
ସବୁଆଡ଼େ ଦୋଳି ସଜ
କେଁକଟ କରେ ଦୋଳି,
ଗୀତରେ ଗୀତରେ ଅନୂଢ଼ା କିଶୋରୀ
ମନକଥା ଦିଏ ଖୋଲି ।
ଗାଁ ଝିଅଙ୍କର ଭଳି ଭଳି ନାଚ ଗୀତ
ସେନେହ, ଶରଧା, ମାନ ଅଭିମାନ
ସବୁ ଛବି ଅଭିନୀତ ।

କୁଳ ବେଉସାରେ ଆମ ଗାଁ ଲୋକ
ସଦାରତ
ସମସ୍ତେ ଅଟନ୍ତି କର୍ମଯଜ୍ଞର,
ପୁରୋହିତ,
ଯେଝା କାମେ ଯିଏ ଲାଗିଥାନ୍ତି
ମନରେ ନଥାଏ ଭୟ ଭ୍ରାନ୍ତି ।

ଆମ ଗାଁ ବଇଦ ଦେଖନ୍ତି 'ଛୁତ'
ଠଉରାନ୍ତି ରୋଗ ଅଙ୍କ ବହୁତ ।
ଚେର ମୂଳୀ ଜଡ଼ି ବୁଟି ସେ ଦେଇ
ଦିଅନ୍ତି ରୋଗକୁ ଦୂରେ ଦୂରେଇ
ନିଅନ୍ତିନି କେବେ ପାଉଣା କିଛି
ସେବା ଧରମକୁ ନେଇ ସେ ବାଛି ।

ବଇଦିଆଣୀ
ଗାଁ ଟା ଯାକର ଆଦରମଣୀ,
ସବୁ ବୋହୂଙ୍କର ଧରମ ମା' ସେ
ଧରମ ମା'
ଜାତି ଅଜାତିର ଭେଦଭାବ ନାହିଁ
ସାନ ବଡ଼ ବୋଲି ସେ ଭାବନ୍ତି ନାହିଁ,
ପୋଖରି ଶାଳରେ ହୁଅନ୍ତି ସାହା ।
ସବୁ ବୋହୂଙ୍କର ଧରମ ମା' ସେ
ଧରମ ମା'
ଗାଁରେ ଥିଲେବି ଅଭାବ ଦୁଃଖ
ତା'ରି ଭିତରେ ଲୁଚି ରହିଅଛି
ସରଗ ସୁଖ ।

ଆମ ଗାଁ ଧୂଳି ମାଟିରେ ମିଶିଛି
କେତେ ମଣିଷର ମମତା ଧାରା
ସେ ମମତା ଟୋପେ ପାଇବା ପାଇଁକି
ସମସ୍ତଙ୍କ ମନ ପାଗଳ ପରା,
ଅତି ପ୍ରିୟ ଅଟେ ଆମରି ଗାଁ
ଖଣ୍ଡ ମଣ୍ଡଳରେ ମହକି ଉଠଇ ତାହାର ନାଁ ।

•

## ୫୪

# କବି ତୁମେ

କବି ତୁମେ
କବି ତୁମେ,
ଭାବ ବ୍ୟାକରଣ ଅଶୁଦ୍ଧ ତୁମର
ମନୋ ଭୂମେ
କବି ତୁମେ ।

କୋକିଳକୁ ଭାବ କୋକିଳା ବୋଲି
'ଗାନମୟୀ' କହି ପ୍ରଶଂସା ଢ଼ାଳି,
'କୁହୁ ସଙ୍ଗୀତର ତଟିନୀ' ତାକୁ
କୋକିଳା ଗାଏନା କେବେ ଗୀତକୁ
ସିଏ ଅଟେ ଭାରି ଲଜ୍ଜାଶୀଳା,
କୋକିଳ, କାକଳି ତୋଳିଥାଏ ଡ଼ାକି
ଦେଇଥାଏ ତାରେ ପ୍ରୀତି ଇସାରା,
ନିରବେ ସମ୍ମାକ୍ଷେ ଲଜ୍ଜାଶୀଳା ।

ଚନ୍ଦ୍ରକୁ ତୁମେ 'ଚନ୍ଦ୍ରମା' କହି
ନାରୀତ୍ୱ ଆରୋପ କର ତା'ଠାରେ
ବିପରୀତ ତୁମ ଭାବ ବେଭାରେ
ସେ ନୁହେଁ ନାରୀ,
ଲାଜକୁରୀ ଅବା ସେ ହସକୁରୀ ।
ରଜନୀ ରାଣୀର ସଜନୀ ସଜାଇ କବିତା ଲେଖ
କରି ତାକୁ ତୁମେ ସୌନ୍ଦର୍ଯ୍ୟମୟୀ
ନବବଧୂ ଟିଏ, ତା' ରୂପେ ଦେଖ,
କବି କଳ୍ପନା ଏ' ଫଗୁଖେଳ
ସୃଷ୍ଟି ତୁମର ଲାଲ ଗୁଲାଲ ହେ;
ଲାଲ ଗୁଲାଲ ।

ହାତରେ ଧରିଛ ରଙ୍ଗତୂଳି
ଥାନ ଅଥାନରେ ଦେଉଛ ବୋଳି,
କେଉଁ ମନ୍ତ୍ରର ଅଞ୍ଜନ ଲେପି
କରୁଛ ତାହାକୁ କି' ମନଲୋଭା !
ଦୁର୍ବୋଧ ହେଲେ ହେଉ ତା' ଅବା ।

କବି ହସି ହସି, କହିଲେ, "ଶ୍ରେୟସୀ
ଯାହା ଗୋ କହିଲ ସବୁତ ସତ,
କବି ଅସଂସାରୀ, ଭ୍ରମର ଭଉଁରି
ସବୁବେଳେ ଭୁଲ୍ ତା' ଯତିପାତ ।
ଅସଜଡ଼ା ତା'ର ଛନ୍ଦଧାରା
ଭାବ ଭସାଣିଆ ମନଟି ତାହାର
ଭାବ ବାରିଦରେ ବର୍ଷାତୁରା ।
କବିର ସାଧନା, ଭକ୍ତି ଆରାଧନା
ଭକ୍ତି ରସମୟ ପ୍ରକାଶ ତା'ର
ଭକତି ଭାବରେ 'ନାରୀ ଭାବ' ଭରା
ସୌନ୍ଦର୍ଯ୍ୟମୟ ସାରା ସଂସାର,
ନାରୀର ପ୍ରତୀକ ସ୍ନିଗ୍ଧ ସୁଷମା କୋମଳ ଭାବ
ସଂକ୍ଷିର୍ଣ୍ଣତାର ନାହିଁ ତହିଁ କିଛି ବ୍ୟର୍ଥ ରାଗ
କବି ଲେପିଦିଏ ଭାବ ଅରୁଣିମା, ଭାଷାର ବୁକେ
ତାହା ତା' କବିତା, ସ୍ନିଗ୍ଧ ଛବି ତା'
ମୁଗ୍ଧ ମଧୁର ତା' ଅନୁଭବେ ।
ଭାବ ଓ ଭାଷାର ଅଟେ ମଧୁଶାଳା କବିତା ତା'ର
ହଜିଯାଏ ତହିଁ ବିରୋଧାଭାସର ଦ୍ୱନ୍ଦ୍ୱଭାର,
ଭେଦଭାବ କିଛି ନଥାଏ ତହିଁ
ତା' କବିତା ଅଟେ
ଲଳିତ ଭାବର ବଢ଼ିଲା ନଈ ଗୋ !
ବଢ଼ିଲା ନଈ ।"

•

୫୫

# ଜନ୍ମଦିନ

ଅଶି ପଞ୍ଚକେ ଆଜି ପାଳୁଛି ମୁଁ ଜନ୍ମଦିନ
ଆକାଶରେ ଛୁଟେ ଶେଷ ବୈଶାଖି ଘୂର୍ଣ୍ଣିଘନ,
ମନେ ପଡ଼େ ଆଜି ପ୍ରଥମେ ଯେଦିନ
ଛୁଇଁଲି ଭୂଇଁ
ଜନନୀ ଜଠର ସୁରକ୍ଷା ବଳୟ
ଆସିଲି ଛୁଇଁ,
ସେ ଦିନଟି ଥିଲା ଜ୍ୟେଷ୍ଠ ମାସର
କୃଷ୍ଣ ଷଠୀ,
ନବ ଜୀବନର ଜନ୍ମତିଥି ମୋ ଜନ୍ମତିଥି ।
ବିକଳେ ଡାକିଲି ମୁଁ କୁଆଁ....କୁଆଁ
କାହିଁ ମୋର ମା, କାହିଁ ମୋ ମାଆ ?
ଜନନୀ ମୋର
ବୁକେ ତୋଳି ନେଲେ ହୋଇ ବିଭୋର ।

ଅମୃତ ଝର ଝରିଲା ମୁଖେ ମୋ ଝରିଲା ମୁଖେ
ପାନକଲି ମୁହିଁ ପରମ ସୁଖେ
ମାଆର କୋଳ,
ଅବୋଧ ଶିଶୁର ଆଶ୍ରା ଥଳ ।
କୁଆଡ଼େ ଥିଲି ମୁଁ କୁଆଡ଼େ ଆସିଲି
ନ ପାରେ ଜାଣି,
ସୁଖ ଶାନ୍ତିମୟ ଅଜ୍ଞାତ କୋଳ
ଆଦରରେ ମୋତେ ରଖିଲା ଟାଣି ।

କରୁଣାମୟୀ ଜନନୀ ମୋର,
ଭାବୁଛି ଆକାଶୁ ଚନ୍ଦ୍ର ଖସିଛି
କୋଳକୁ ତା'ର ।

ସେନେହ ମଧୁର ପ୍ରେମ ରସପୂର
ମୁହିଁ ଟି ଚାହିଁ
ମୁଖେ ମୋ ଛୁଟିଲା ହସର ନଈ ।
ଜାଣିଲି ଜାଣିଲି ସିଏ ମୋର ମା'
ମମତାମୟୀ, ମୋ' ଜୀବନମୟୀ
ହୋଇଗଲି ତାଙ୍କ ଜୀବନ ଧନ,
କିଣିଲି ହୃଦୟ ଅନ୍ତର ମନ ।

ମୋର ଶଇଶବେ ବାଲ୍ୟକାଳ,
କେଡ଼େ ମନୋହର, କେତେ ସୁମଧୁର
କେଡ଼େ ସବୁଜାଭ କି ଶୋଭାମୟ,
ସାରା ଜଗତଟା ହୋଇଲା ପ୍ରିୟ ମୋ
ହୋଇଲା ପ୍ରିୟ ।

ମିଟି ମିଟି ତାରା ସରଗ ଶଶୀ
ନୀଳ ଆକାଶରେ ସେ ହସି ହସି
ଡାକନ୍ତି ପିଲାଏ ଆସରେ ଆସ
ଦେଖୁଛ କି ନାହିଁ ଚହଟେ ବାସ
ପାରିଜାତ ଫୁଟି ନନ୍ଦନବନେ
ବାସ ଉକୁଟାଏ ତିନି ଭୁବନେ ।

ଆସିଲେ କତି
ମହୁମାଛି, କଙ୍କି, ପରଜାପତି ।
ଭଦ ଭଦାଳିଆ, ଶଙ୍ଖଚିଲ
ଆକାଶରେ ଉଡ଼ି ଖେଳିଲେ ଖେଳ
ଶୁଭ ମନାସିଲେ ସେ ପିଲାଦଳ ।

ଉଚ୍ଚ ତାଳଗଛେ ବାଇ ଚଢ଼େଇ
ଝୁଲି ଝୁଲି ଡ଼ାକେ ହାତ ବଢ଼େଇ
ଆସରେ ଚଢ଼ି,
କଅଁଳିଆ ମିଠା ତାଳସଜ ଖାଇ
ମାରିବ ଏ'ଡ଼ି ।

କଅଁଳା ବାଛୁରୀ, ଛେଳି ଛୁଆ
ଦାଣ୍ଡ ଦୁଆରେ ମାରି ଡ଼ିଆଁ,
ଡାକନ୍ତି ଆମକୁ ଥିରି ଥିରି
ଆମେ ହସି ହସି ଖିଲି ଖିଲି
    କୋଳ କରି ନେଉ ଆନନ୍ଦରେ
        ସରାଗରେ ।
ସ୍ମୃତିର ମୁରୁଜେ ମଣ୍ଡିତ ଆମ ପିଲାଦିନ
ମନେ ପଡ଼ିଗଲେ ମନହୁଏ ଖାଲି ଛନଛନ,
    କେଡ଼େ ମଧୁବୋଳା ଶଇଶବ ଆମ କଇଶୋର
    ଶତ ସପନର ଯାଦୁଘର ସେ'ତ ଯାଦୁଘର ।

    ଘନାୟିତ ଘନ ଯଉବନ
    ପ୍ରେମ ପୀରତିରେ ରସଘନ,
    ଶକ୍ତିର ଉତ୍ସ ଅବାରିତ
ଜୀବନ ବେଳାରେ ତରଙ୍ଗ ତୋଳି ଲୀଳାୟିତ -
    ପ୍ରୀତି ଫେନାୟିତ ।

ଆଶା ଉତ୍ସାହ ତୋଳେ ସଂକଳ୍ପ ସମାହାର
ଜୟଗାନ ତୋଳେ ଯୌବନର,
    ଶୁଣାଯାଏ ଜରା ପଦଧ୍ୱନି
ଯାହା ଆସିଥିଲା ବାହୁଡ଼ିଲା ଦିନେ ତୁନି ତୁନି ।
    ସରିଆସେ ଜୀବନ ଉତ୍ସବ
    ଶୁଭେ ରଡ଼ି ଭୟର ଭୈରବ,
    ନଇଁ ଆସେ ଯବନିକା ଧୀରେ
        ଶେଷ ହେବ ଅଭିନୟ
        ଘନ ଅନ୍ଧକାରେ ।

•

## ୫୬

# ମାନସୀ

ଯେଉଁ ଦିନୁ ଦୂରେ
ଦୂରେଇ ଗଲ ଗୋ !
ସେଦିନୁ ଲେଖୁନି କବିତା,
ଲେଖନୀ ମୋ'ର ଅଟକି ଯାଇଛି
ଝରାଉନି ଭାବ ସରିତା ।

ନାହିଁ ନାହିଁ ତହିଁ
ଚାରୁ ଚାନ୍ଦିନୀ
ଚିତ୍ତ ଚହଲା ଉଲ୍ଲାସ,
ନାହିଁ ମୋ ମନର ଭାବ ତାରକାର
ମିଟି ମିଟି ଆଖି ବିଳାସ,
ଚନ୍ଦ୍ରିକା, ଆଜି ସଜନି !
ବିରହ ତଳପ, ରଜନି ।

ବସନ୍ତ ଆସୁନି
ଆନନ୍ଦେ ହସୁନି
ବୁହାଉନି ମଧୁ ମଳୟ,
ମୋ ଚିତ୍ତ ଚୂତ ବଉଳୁନି ଆଉ
ନବ ପଲ୍ଲବର ଆଳୟ ।

ବଇଶାଖ ଖାଲି
ନିଆଁ ବରଷୁଛି
ହତାଶାର ଗୁଳୁଗୁଳିରେ,
ଜଳି ପୋଡ଼ି ମୁହିଁ ମରୁଛି ସଖିଗୋ !
ତୁମେ ଆଜି ବହୁ ଦୂରରେ,

ପାଶେ ଥିଲ ଯେବେ ସଜନୀ
'ନିଦାଘ'....ଶୀତର ରଜନୀ ।

ଲୁହ ପାଲଟିଛି
ବରଷା ଅସରା
ଜୀବନର ନଈ ଉଛୁଳେ,
ଭ୍ରମେ ଭଉଁରିରେ ବିରହୀ କବିଗୋ !
ବିଳପେ ବିଧୁର ବିକଳେ,
କିଏ ଟାଣି ନେବ କୋଳକୁ
ପୋଛି ଦେବ ନେତ୍ର ନୀରକୁ !

ଘଡି ଘଡି ଶୁଭେ ଘୋର ଘଡ଼ଘଡ଼ି
ବ୍ୟଥିତ ପ୍ରାଣର ବେଦନ
କିଏ ଆଶ୍ୱାସିବ ଏ'ମନ !
ବିରହ ବୀଣାରେ ଗୁଞ୍ଜରି ଉଠେ
ବ୍ୟଥିତ ବିରହ ରାଗିଣୀ
ଅଲେଖା କବିତା, ଝୁରି ମରିବାର
ମୃତ ସିକତଳ ତଟିନୀ ।
ଆସିବନି ତନୁ ପଖାଳି
ମରୁ ନଈ କୋଳେ
କବି ଆସିବନି
ନେବାକୁ ପ୍ରିୟାରେ ଶଙ୍ଖୁଳି ।

•

# ୫୭
# ବିଶ୍ୱଲୀଳା

ସ୍ୱର୍ଗର ପରୀଗଣ
ମର୍ତ୍ତ୍ୟର ବିହଙ୍ଗମ
    କରନ୍ତି ବିହାୟସେ ବିହାର,
ଦେଖନ୍ତି ବନଭୂମି
ପର୍ବତ ନଭଶ୍ଚୁମି
    ନଦୀ ସରୀତ୍ ବହେ ସାଗର ।
କାନନ ଶୋଭାବନ ସୁଷମା
ଅନିନ୍ଦ୍ୟ ଅପରୂପ ବରଣା ।

ବହଇ ଗନ୍ଧବହ
ତୋଳି ପ୍ରାଣ ପ୍ରବାହ
    ସଙ୍ଗୀତ ସୁରେ ସୁରେ ମହିରେ,
ଜୀବନ ଜୟଗାନ
ତୋଳେ ସେ ଅବିରାମ
    କରମ ମନ୍ତ୍ର କାନେ କହିରେ ।
ହୁଏ ପ୍ରବହମାନ ପୁଲକେ
ନବୀନ ଜୀବନର ଝଲକେ ।

ଜଗତ ପ୍ରାଣପତି
ଆସନ୍ତି ନିତିନିତି
    ଭୁବନେ ଭରି ପ୍ରାଣ ଶକତି,

ଅନ୍ଧାର ଧୋଇ ଦେଇ
ଆଲୋକ ବୁଣି ଦେଇ
ସଂଚାରି ଜୀବନର ବିଭୂତି,
ଏ' ପାଖୁ ନିଅନ୍ତି ସେ ବିରତି
ସେ ପାଖେ ହେବେ କର୍ମ ବରତୀ ।

ଆସନ୍ତି ଇନ୍ଦ୍ରଦେବ
ମର୍ତ୍ତ୍ୟ ଉତ୍ସବ ନବ
ଘନ ଅମ୍ବୁଦ ଘେନି ସାଥିରେ,
ଅମୃତ ବାରିଧାରା
ଢ଼ାଳନ୍ତି ବୁକେ ପରା,
ଶାନ୍ତି ଶୀତଳତା ମାଖିରେ ।
ଜଗତେ ଭରିଯାଏ ଜୀବନ
ମୂର୍ଚ୍ଛିତ ପ୍ରୀତିରାଗ ଲଗନ ।

•

## ୫୮

# କର ନାହିଁ ଡ଼େରି

ଚତୁର୍ଦ୍ଦିଗେ ଆଜି କିଆଁ
ଝାଞ୍ଜି ଖରା ଅଗ୍ନି ବିଭୀଷିକା !
ଶୁଭୁନାହିଁ ଶ୍ରାବଣର
ବାରିଧାରା ଲଳିତ ଲାଳିକା,
ମେଘର ମର୍ମର,
କେ' କରି ଦେଇଛି ବନ୍ଦ
ମେଘମାଳା ପ୍ରୀତି ଅଭିସାର !!

ଏ' ବିଶ୍ୱ ହରାଇ ଅଛି
ଆଜି ତା'ର ପ୍ରାଣମୟୀ ସଂଜ୍ଞା
ସମସ୍ତେ ପାଲଟିଛନ୍ତି
ନଭମୁଖୀ ଚାତକ, ବୁଭୁକ୍ଷା,
ବସୁଧା ଏଠାରେ
ଆଁ କରି ପାଟି ମେଲି
ଚାହିଁଅଛି ଅସୀମ ଊର୍ଦ୍ଧ୍ୱରେ ।

ସୁସଂହତ ସୁଗଠିତ
ଶକ୍ତିଶାଳୀ ସୈନ୍ୟବଳ ଧରି
କାହାର ନିର୍ଦ୍ଦେଶ ପାଇଁ
ମେଘମାଳା ଚାହିଁଛି ଉପରି,
ମିଳୁନି ନିର୍ଦ୍ଦେଶ
ଚାଳିବ ସୈନ୍ୟ ବାହିନୀ
ତୋଳିବାକୁ ସମର ନିର୍ଘୋଷ ।

ହେ ଦେବ ବରୁଣ !
ଜଗତର ଅବସ୍ଥା କରୁଣ ।
ଏ ଅବନୀ କୂଳଲଘା
ଚଉଦିଗେ ଲୋତକର ବନ୍ୟା
ସବୁ ଆଜି ଟଳମଳ
ବନ୍ୟାମୟୀ ଆଜି ଏ ଅବନ୍ୟା
ସର୍ବେ ଏକାକାର,
କିନ୍ତୁ ଟାଳି ପାରିନାହିଁ
ତୁମର ସେ ହୃଦୟ କଠୋର ।

ଶୁଣ ହେ ବରୁଣ ଦେବ !
ବସୁଧାର ତପ୍ତ ନିଶ୍ୱାସରେ
ବାଷ୍ପୀଭୂତ ହୋଇଯିବ
ପରିବ୍ୟାପ୍ତ ଶୂନ୍ୟ ବଳୟରେ
ରାଜ ପଣ ସରିଯିବ ତୁମ,
ପୀଡ଼ିତ ପ୍ରଜାର ଖର ନିଶ୍ୱାସରେ ଆମ ।
ବିଳମ୍ବ ନକର
ତୋଳ ତୁମ ରାଜୋଚିତ କର୍ତ୍ତବ୍ୟ ଶ୍ରଦ୍ଧାର ।

•

୫୯

# ଛନ୍ଦଲୀଳା

ଛନ୍ଦ ମାଟିର ପିଲା ଆମେ ଆରେ !
ଛନ୍ଦ ମାଟିର ପିଲା,
ବନ୍ଧ କାହିଁକି ଭାଙ୍ଗିବା ଆମେ
ଘାଇ କରିଦେବା ମେଳା ?

ମେଳା ଘାଇ ସୁଅ ଅତି ବାତୁଳାରେ
ନ ମାନଇ ବାଧା କିଛି,
ଯେଉଁ ଆଡ଼େ ଚାହେଁ, ସେ ଆଡ଼େ ମୁହାଁଏ
ଖଣ୍ଡ ପ୍ରଳୟ ରଚି ।

ଏ' ବିଶ୍ୱ ଅଟଇ ଛନ୍ଦ ବାରିଧି
ସବୁଠି ଛନ୍ଦ ଲୀଳା,
ଏ'ପରି କେ' ଅଛି ମହି ମଣ୍ଡଳେ
ନ ଅଟେ ଛନ୍ଦ ଭରା ।

ସମୀରଣ ଚଳେ ଛନ୍ଦ ତୋଳିରେ
ବାରି ବରଷଇ ଛନ୍ଦେ,
ମଳୟ ବହଇ ବସନ୍ତ ବନେ
ମାଦକେ, ମନ୍ଦେ ମନ୍ଦେ ।

ଅଗ୍ନି ତୋଳଇ ଲେଲିହାନ ଶିଖା
କ୍ରୋଧର ଛନ୍ଦ ତୋଳି,
ମେଘ ଡମ୍ବରୁ ଡିଣ୍ଡିମ ଶୁଭେ
ତଡିତ୍ ଆଲୋକ ବୋଳି ।
ଶୁଭେ ମର୍ମର ଧ୍ୱନି
ବରଷାର ଆଗମନୀ ।

କକ୍ଷରେ ଘୂରେ ପୃଥିବୀ ଛନ୍ଦେ,
ସୂର୍ଯ୍ୟ ଚନ୍ଦ୍ର ତାରା,
ଅନନ୍ତ କାଳୁ ଚାଲିଛି, ଚାଲିବ
ଏ ମହା ଛନ୍ଦ ଲୀଳା ।

ପାଷାଣେ ବାଜିଲେ ଭାସ୍କର ହାତ
ସେ ତୋଳେ ନୃତ୍ୟ ଗୀତ,
ଛନ୍ଦ ମଧୁର ତାନ ତୋଳି ସିଏ
ହରଇ ନିଖିଳ ଚିତ୍ତ ।

ବୟସର ବନ ଛନ୍ଦ ଉଚ୍ଛୁଳା,
ଜନମୁ ମରଣ ଯାଏ
ଭରା ଯଉବନ ଛନ୍ଦର ବନ
ସପନର ନଈ ଟିଏ ।
ଜରା ଜର୍ଜର, ତୋଳଇ କରୁଣ ଛନ୍ଦ
ତା'ପରେ ହୁଏରେ ଛନ୍ଦପତନ
ସବୁ ହୋଇଯାଏ ବନ୍ଦ ।
ସବୁ ହୋଇଯାଏ ବନ୍ଦ ।

•

୬୦

# ବାୟୁଦେବ

କାହିଁକି ଅବିଚାର କରିଲ ପିତା !
ଗଢ଼ିଲ ମୋତେ କରି ଅଦୃଶ୍ୟ ସତ୍ତା,
ସରବେ ମଣ୍ଡିଅଛ, ରୂପ ସମ୍ଭାରେ,
ଅରୂପ କଲ ମୋତେ କେଉଁ ଦୋଷରେ ।

ସବୁଠାରୁ ଅଟଇ ମୁଁ ଅସହାୟ
ଭ୍ରମୁଛି ଅବିରତ ବାତୁଳ ପ୍ରାୟ,
କରିଦେଇଛ ମୋତେ ହେ ବାସ୍ତୁହରା !
ଆଶ୍ରୟ ନେବାପାଇଁ ନାହିଁ, ସାହାରା ।

ନିଜର ଶକ୍ତି ନାହିଁ ଚଳିବା ପାଇଁ
ଅଦୃଶ୍ୟ ଶକ୍ତିବଳେ ସଂଚରେ ମୁହିଁ,
ଅରୂପ ବୋଲି ଅଟେ ମୁଁ ବର୍ଣ୍ଣହୀନ
ଯେ ବର୍ଣ୍ଣ ସାଥେ ମିଶେ ସେ ବର୍ଣ୍ଣ ମମ ।

ଉଦ୍ଭିଦ ଗଛଲତା ଜୀବ ଜଗତ
ସୁଗନ୍ଧ ଯୁକ୍ତ ସର୍ବେ ପ୍ରକୃତି ଦତ୍ତ,
ମୋ ବିନୁ 'ଗନ୍ଧହୀନ' ନାହିଁ କେ ଭବେ
ହୁଏ ମୁଁ ଗନ୍ଧଯୁକ୍ତ, ଲଭେ ମୁଁ ଯେବେ ।

ଉଷ୍ଣ, ଶୀତଳ, ମୋର ଅଦେହ ଦେହ
ଅନୁଭୂତିରେ ମୁହିଁ ସଦା ପ୍ରବହ,
ତହିଁରେ ଅଟେ ମୋର ଅସ୍ତିତ୍ୱ ଲୀନ
ଏପରି କରିଦେଲ କାହିଁକି ହୀନ ?
ପ୍ରଭୁ ପରମ ପିତା !
ଅଟଇ ମୁହିଁ ସର୍ବହରା ସଂହିତା ।

"ଶୁଭିଲା ମଧୁକ୍ଷରା ଅମୃତ ବାଣୀ
ଅଦେହ ବାୟୁଦେବ ! ହେ ଅଭିମାନୀ ! !
ଦିବ୍ୟ ସନ୍ତାନ ମୋର ଅଟ ହେ ତୁମେ,
ଜଗତ ଦେହଧାରୀ ଏ ବିଶ୍ୱେ ଭୂମେ ।

ସୃଷ୍ଟିର ପ୍ରାଣାଧାର ହେ ପବମାନ
ବଞ୍ଚିତ ବୋଲି କିଂପା ଏ' ଅଭିମାନ,
ସମସ୍ତେ ଏ' ମର୍ତ୍ତ୍ୟରେ ମରଣଶୀଳ
ଯେ ତୁମ କୃପାହୀନ, ଭେଟେ ସେ କାଳ ।

ଅରୂପେ ବହୁ ରୂପେ ଚର୍ଚ୍ଚିତ ନିତି
ମଳୟ, ମଧୁବାତ, ଗ୍ରୀଷମ ତାତି,
ସମୀର ସୁଲୁସୁଲୁ, ଶୀତଳ ବାଆ
ଝଡ଼ ବତାସ, ବାତ୍ୟା, କେତେ ଯେ ନାଁ
'ସର୍ବଭରା' ହେ ତୁମେ !
କହୁଛ ସର୍ବହରା କି ଅଭିମାନେ ! !"

•

୬୧

# ଅକ୍ଷର

ପ୍ରତି ଲିପିମୁଦ୍ରା ଗର୍ଭେ
ବିଚ୍ଛୁରିତ ଜ୍ୟୋତିର କଣିକା,
ତାହା ତା'ର ଆଲୋକ ବର୍ତ୍ତିକା
ଦୀପ୍ତିମୟ କରିଥାଏ ତା' ମୁଖମଣ୍ଡଳ
ଭରିପ୍ରାଣେ ଆବେଗ ଉତ୍ତାଳ
ପ୍ରକାଶିବା ପାଇଁ,
ମିଳିଗଲେ କଣ୍ଠ ସ୍ପର୍ଶ, ଉଚ୍ଚାରଣେ
ଯାଏ ସିଏ ବହି ।
ରୂପରେ ରୂପରେ ତା'ର ହୁଏ ରୂପାନ୍ତର
ଅରୂପେ ବିଲୟ ହୋଇ
ମୂର୍ତ୍ତିମାନ ଅକ୍ଷର ବ୍ରହ୍ମର ।

ଅକ୍ଷରର ମହାସଭା ଏ' ବିଶ୍ୱବ୍ରହ୍ମାଣ୍ଡ,
ଅକ୍ଷର ବିଭୂତି ଭରା
ଅନନ୍ତ ପ୍ରକୃତି ପରା,
ପ୍ରକାଶିତ ହୋଇଥାଏ, ବିଶ୍ୱପ୍ରାଣ
ଜ୍ୟୋତିର୍ମୟ ପିଣ୍ଡ ।

ଅକ୍ଷର ଆହୁତି ଢ଼ାଳି
ସାରସ୍ୱତ ମହାଯଜ୍ଞ ଧାରା
ଊର୍ଦ୍ଧ୍ୱଗାମୀ ହୋଇଥାଏ
ଜ୍ୟୋତି ଶିଖା ଅନନ୍ତ ପସରା,

ଶୂନ୍ୟ ଗର୍ଭ ହୁଏ ଲିପିମୟ,
ସୁରଭିତ ଶବ୍ଦର ଆଳୟ ।

ସୃଷ୍ଟି ମଧୁ ମୁହୂର୍ତ୍ତରୁ
ଯେତେ ଶବ୍ଦ ହୋଇଛି ସ୍ଫୁରିତ
ଉଚ୍ଚାରିତ ବା ଅନୁଚ୍ଚାରିତ,
ଭରିଛି, ତା' ମହା ଶୂନ୍ୟ ଶବ୍ଦର ଭଣ୍ଡାର
ଅନନ୍ତ କାଳର ।

ବନ୍ଧୁଗଣ !
କରନାହିଁ ଅପବିତ୍ର, 'ଶବ୍ଦବ୍ରହ୍ମଧାରା'
ପ୍ରୟୋଗେ ଶୁଦ୍ଧତା ରଖ, ତା' ଅମୃତଝରା
ବାଣୀର ବନ୍ଦନା,
କର ନିତି ବାଣୀ ଆରାଧନା ।
ଏ' ମୁଖ ମନ୍ଦିରେ,
ବିହିତ ବିଧିରେ ।

ଶୁଭ ଶଙ୍ଖ, ଶୁଭ ଘଣ୍ଟ, ବାଜୁ ଏଥି ନିତି
ନିନାଦିତ ହେଉ ଶୁଭ ନୀତି
ଅକ୍ଷରର କର ଜୟଗାନ
ଗ୍ରହଣ କରନ୍ତୁ ସର୍ବେ ବଚନ ବିଧାନ ।

ଶବ୍ଦ ମଧ୍ୟେ କୋମଳତା ଭରିଦେଲେ ଥରେ
ପରିଣତ ହୁଏ ତାହା ପ୍ରୀତି ପଙ୍କଜରେ,
ହସି ଉଠେ ଭାଷାର ଉଦ୍ୟାନ
ମଧୁମୟ ହୋଇ ଉଠେ ଦୁଃଖଦ ଜୀବନ ।
ବଚନକୁ କର ମଧୁମୟ,
ରଚିବ ତା' ଶାନ୍ତିର ବଳୟ ।



୬୨

# ନବବଧୂ

ଆସିଲା ନବବଧୂ
ହୃଦୟେ ଭରି ମଧୁ
ଜୀବନ ରଙ୍ଗମଞ୍ଚେ ସଧୀରେ,
ନୟନ ସ୍ୱପ୍ନ ବୋଳା
ଅଧରେ ସ୍ମିତ ଲୀଳା
ଆଲକ୍ତ ରେଖା ପଦଯୁଗଳେ ।

ଅବଗୁଣ୍ଠନବତୀ
ଚଳଇ ମଥା ପୋତି
ସଲଜ୍ଜ ଭୀରୁ ଭୂରୁ ଚଳାଇ,
ଚାରୁ ଚଟୁଳ ଚାଟୁ
ଝରେ ଅଧର ତଟୁ
ସ୍ମିତ ତଡ଼ିତ ରେଖା ଖେଳାଇ ।

ଚାଲୁଛି ନଇଁ ନଇଁ
କି କଥା କହି କହି,
ଲୋଟୁଛି ତା'ର ନୀଳ ନୟନ,
ଭେଟୁଛି କେତେ ଭାବ
କରୁଛି ଅନୁଭବ
ହେଉନି ବଚନରେ ବୟନ ।

ସେ ଥିଲା ମୁକ୍ତ ଛନ୍ଦ
ଏବେ ବଚନବନ୍ଧ
ବନ୍ଧନେ ଅଛି କେତେ ତୃପତି,
ଜୀବନ ଭରା ନଈ
ଯାଉଛି ବହି ବହି,
ମଧୁ ମଧୁର ଅଟେ ତା' ଗୀତି ।

ଆସ ଗୋ ଲକ୍ଷ୍ମୀ ବଧୂ !
ଘେନ ସେନେହ ମଧୁ
ଏ' ପୁର ସ୍ନେହ ଶ୍ରଦ୍ଧା ପୂରିତ,
ଏ' ଘର ଶ୍ରଦ୍ଧାଳୟ
ଚିର ଶାନ୍ତି ଆଳୟ
କର୍ମ ଧର୍ମର ପୀଠ, ଶୋଭିତ ।

ଏ' ପୁର ମହାରାଣୀ
ମନ୍ଦିର ପୂଜାରିଣୀ
ପାବନ ତୀର୍ଥ କର ଏ ପୁର,
ଆନନ୍ଦେ ହଜିଯାଅ
କର୍ତ୍ତବ୍ୟେ ମଜ୍ଜିଯାଅ
ସାଥେ ଧରିଗୋ ସାଥୀ ସୁଶୀଳ ।
ପିଛିଳ ଏ' ଜୀବନ ପଥ ଗୋ !
ପ୍ରିୟକୁ ପ୍ରିୟ କରି
ନିବିଡ଼େ ହାତ ଧରି
ଚାଲିଲେ ନାହିଁ ପରମାଦ ଗୋ !

ପବିତ୍ର ଗୃହ ଧର୍ମ
ପାଳଗୋ ବଧୂ କର୍ମ,
ଅତିଥି ଅଭ୍ୟାଗତ ସ୍ୱଜନେ-
ସେବାରେ ଭରି ଶ୍ରଦ୍ଧା,
ଅନ୍ତରେ ଉଦାରତା
ତୋଷ ଗୋ ଚିତ୍ତ ସୁଧା ସୁଗୁଣେ ।
ଜୀବନ ଜୟଗାନ ତୋଳି ଗୋ,
ଆନନ୍ଦେ ରଙ୍ଗ ହୋଲି ଖେଳି ଗୋ ।
ସଂସାର ହେଉ ବଧୂ ଭବନ
ଭରୁ ସୌନ୍ଦର୍ଯ୍ୟ ଶୋଭା ସୁଗୁଣ ।।

•

୬୩

# ଦୂବ

ଦୂବଟିଏ ମୋତେ କରିଦିଅ ପ୍ରଭୁ !
ଦୂବଟିଏ
ନାନା ସମସ୍ୟା, ନାନା କଷଣ ମୁଁ
ବୁକୁପାତି ନିତି ସହିନିଏ ।
ମାଟିରୁ ଉଠି ମୁଁ, ମାଟିରେ ଲୋଟି ମୁଁ
ମାଟିବୁକେ ପୁଣି ଯାଏ ମିଶି,
ସମସ୍ତଙ୍କ ପଦ ଭରା ମୁଁ ସମ୍ଭାଳେ
ସବୁଜ ସଂସାରେ ହସି ହସି ।

ଏଥିପାଇଁ ମୋତେ ଲୋଡ଼ନ୍ତି ସକଳେ
ଶୁଭ କାମେ, ଦେବ ପୂଜା ପାଇଁ,
ଶୁଦ୍ଧତା ମୋତେ ମିଳି ଯାଇଥାଏ
କଷଣ କଷଟି, କଷା ଖାଇ ।

ବିନା କଷଣରେ, ବିନା ଦୂଷଣରେ
କିଏ ବା ପାଇଛି ବଡ଼ପଣ !
ବଇଶାଖୀ ଖରା ତତଲା ନିଆଁରେ
ପୋଡ଼ି କଅଁଳେ ମୁଁ ପୁଣ ପୁଣ
ପ୍ରଭୁ !
କରିଦିଅ ମୋତେ
ସହନ ପଣର ସାହାନାଇ,
ବିତୁ ଏ ଜୀବନ
ସହନ ପଣର ମଧୁ ସଂଗୀତ ଗାଇ ଗାଇ ।
ଛୋଟ ଦୂବଟିର ଜଗତକୁ ହେବ ମହାଦାନ
ଭାବିବିନି କେବେ ହୀନିମାନ ମୁହିଁ,
ଲଭିଛି ଅମାପ ସନମାନ
ପ୍ରଭୁ! ସନମାନ ।

•

୬୪

# ନିୟତି

ତୁମକୁ ସବୁଠାରୁ ଡରେ ମୁଁ ବେଶି
ଛିଣ୍ଡାଇ ନିଅ ବୋଲି କୋରକ କଷି,
ଛଡ଼ାଇ ନିଅ କୋଲୁ ନବଜାତକ
ବରବଧୂର ହୁଅ ପ୍ରାଣ ଘାତକ ।

ବରକୁ କରିଦିଅ ହେ ବଧୂହରା
ବଧୂକୁ କରିଦିଅ ପତି ବିଧୁରା,
ଜରା ଜର୍ଜର ପିତା ମାତାଙ୍କୁ ରଖି
ଛଡ଼ାଇ ନିଅ ତାଙ୍କ ଯେ ଆଖି ସାକ୍ଷୀ ।

ଜୀବନେ ଭରି ଦିଅ ପ୍ରୀତି ପୀୟୂଷ
ଶ୍ରଦ୍ଧା ଭାଣ୍ଡରେ ପୁଣି ଭରହେ ବିଷ,
ଧନ କୁବେର କର ଦରିଦ୍ର ଦୀନ
ଯେ ରାଜରାଜେଶ୍ୱର ହୁଏ ସେ ହୀନ ।
ତୁମ ଖିଆଲ ଖେଳ
କାହାର କେତେବେଳେ ହୁଅଇ କାଳ ।
ତେଣୁ ଡରଇ ବେଶି
ପାରେନି ବୋଲି ସହି ମୁଁ ହସି ହସି ।

ପୁଣି.......
ତୁମକୁ ସବୁଠାରୁ ପାଏ ମୁଁ ଭଲ
ସର୍ବଦା ଚିନ୍ତା ତୁମ ବିଶ୍ୱ ମଙ୍ଗଳ,
ବୃନ୍ତରେ ଫୁଟାଅ ହେ ନବ କୋରକ
ଜନନୀ କୋଳେ ଭର ନବଜାତକ ।
ଘନ ଅନ୍ଧାରେ ଟୋଳ ପ୍ରଦୀପ ଶିଖା

ଦେଖାଅ ପଥ ଅଟେ ଯା' ଅଣଦେଖା ।
ଭରିଛ ପ୍ରକୃତିରେ ସବୁଜ ଶିରୀ
ଦେଇଛ ବାୟୁ, ଅଗ୍ନି, ବିପୁଳ ବାରି ।

ଅନନ୍ତ ବିହାୟସେ ନକ୍ଷତ୍ର ମାଳା
ସୂର୍ଯ୍ୟ ଚନ୍ଦ୍ରର ଦିବା ରଜନୀ ଲୀଳା,
ନିରସ୍ୱେ ଦିଅ ତୁମେ ଶକତି ବଳ
ନିରାଶ୍ରୟର ତୁମେ ଆଶ୍ରୟ ସ୍ଥଳ ।

ଅଭାଗା ଜନେ କର ହେ ଭାଗ୍ୟଶାଳୀ
ଦୁଃଖୀ ହୃଦୟେ ଭର କରୁଣା ବାରି,
ମାତୃ ହୃଦୟ କର କରୁଣା ସିନ୍ଧୁ
ବଧୂ ହୃଦୟେ ତୁମେ ଭରିଛ ମଧୁ ।

ଦରୋଟି ଭରିଅଛ ଶିଶୁ ବଚନେ
କାହିଁବା ଏତେ ଶାନ୍ତି ଅମୃତ ପାନେ,
ବର୍ଣ୍ଣିବି ତୁମ ସ୍ନେହ କି ଭାଷା ଦେଇ
ମୋ ମନେ ଉଚ୍ଛ୍ୱସିତ ଭାବର ନଈ ।

ତୁମେ ତ ମହାପ୍ରଭୁ କ୍ଷମା ସାଗର
ତୋଷିବି ମନ, ଦେଇ କି ଉପହାର,
ଜଗତେ ଯାହା ସବୁ ତୁମରି ଦାନ
ତୁମକୁ ଦେବି କିସ ମୁଁ ଦୀନ ହୀନ
ଘେନ ଭକତି ଅର୍ଘ୍ୟ,
କର ଉତ୍ସବମୟ ଜୀବନ ପର୍ବ ।।

●

୬୫

# ପ୍ରଳୟ

ଅହର୍ନିଶ ଆନ୍ଦୋଳିତ
ବସୁଧାର ବୁକୁ
ଆଶଙ୍କିତ ଆତଙ୍କିତ
ଜୀବ ମଣ୍ଡଳକୁ,
କେତେବେଳେ ମିଳେ ନାହିଁ ଶାନ୍ତି
ଆଲୋଡ଼ିତ କରେ ପ୍ରାଣ
ଶତ ଭୟ ଭ୍ରାନ୍ତି ।

ଆକସ୍ମିକ ସଂଘଟିତ
ହୁଏ ଭୂକମ୍ପନ
ଅଗ୍ନିଝରା ଲାଭାସ୍ରୋତ
ହୁଏ ଉଦ୍‌ଗୀରଣ,
ଭସ୍ମୀଭୂତ ସ୍ନିଗ୍ଧ ଶ୍ୟାମ ଶିରୀ
ଜ୍ୱାଳା ଦଗ୍ଧ ପ୍ରକୃତି ସୁନ୍ଦରୀ ।

ରୁଷ୍ଟ ରୁଦ୍ର ରଚିଛି ବା'
ତା' ତାଣ୍ଡବ ଲୀଳା
ପ୍ରଶାନ୍ତ ମେଦିନୀ ବୁକୁ
ଅଶାନ୍ତ ମେଖଳା,
ଚତୁର୍ଦ୍ଦିଗେ ଆର୍ତ୍ତ ହାହା କାର
ତା' ଗର୍ଭରେ ସର୍ବେ ଏକା କାର ।

ନୂତନ ସୃଜନଲୀଳା
ହୋଇଯାଏ ବନ୍ଦ
ଧ୍ୱଂସର ଧୂର୍ଜଟି ତୋଳେ
ତା' ଡମ୍ବରୁ ଛନ୍ଦ,
ସବୁ ହୁଏ ଓଲଟ ପାଲଟ
ବସୁଧାର ଘଟାନ୍ତର ଘଟ ।

ଲିଭଇ ସମୁଦ୍ର ବୁକୁ
ଉତ୍ତାଳ ଲହରୀ
ତା' ବୁକେ ମରୁ କାନ୍ତାର
ଉଠଇ ଶିହରି,
ମରୁ ବୁକୁ, ପାଲଟେ ସମୁଦ୍ର,
ସମୁଦ୍ରରେ ମରୁ ଚିତ୍ରପଟ ।

ପରିବର୍ତ୍ତନର ପୁଙ୍ଗା
ପ୍ରଳୟ ବେଦିରେ,
ତୁହାଇ ତୁହାଇ ବାଜେ
ଧ୍ୱଂସର କବରେ
ଅନାଗତ, କରଇ ସ୍ୱାଗତ,
ଭେଟିବାକୁ ନୂତନ ପ୍ରଭାତ ।

ସର୍ବଗ୍ରାସୀ ପ୍ରଳୟ ତା'
ଧ୍ୱଂସ ଲୀଳା ତୋଳି
ବସିଥାଏ ସର୍ବଗ୍ରାସ
କରିବ ସେ ବୋଲି,
ଉଠେ ଉର୍ଦ୍ଧ୍ୱେ ବିଚଳିତ ସ୍ୱର
ଭସ୍ମ କୁଣ୍ଡୁ ପରିବର୍ତ୍ତନର ।

ବର୍ବରତାରେ ଉର୍ବର,
ମାନବ ସଭ୍ୟତା
କର୍ମନେ ମନ୍ଥନେ
ଦୂର ହେଲା ଆଦିମତା,
ଅଗ୍ରଗାମୀ ସଭ୍ୟତାର ରଥ
ଭାଙ୍ଗି ଗଢ଼ି ସୃଷ୍ଟି କଲା
ନୂଆ ନୂଆ ପଥ ।

ଅଙ୍କୁରି ଉଠିଲା ତହୁଁ
ନବ ଜାଗରଣ,
ବିଜ୍ଞାନ, ସାହିତ୍ୟ, କଳା
ସଂସ୍କୃତି ଦର୍ଶନ,
ସବୁ ଏକ ନୂତନ ଦିଗନ୍ତ
ପ୍ରଳୟର ପୂରେ ପୁଣି
ଜୀବନ ବସନ୍ତ ।
ସୃଷ୍ଟି ଆଉ ପ୍ରଳୟର ଅବାରିତ କ୍ରମ
କହ କେ ପାରିବ କରି ତା'ର ବ୍ୟତିକ୍ରମ !!!

•

୬୬

# ଶ୍ରଦ୍ଧା

ନମ୍ରତାରେ ନଇଁଗଲେ ମନ
ଆନନ୍ଦର ଆର୍ଦ୍ରତାରେ ଭିଜିଗଲେ ପ୍ରାଣ
ଶ୍ରଦ୍ଧା ସିନ୍ଧୁ ହୁଅଇ ଉଦ୍‌ବେଳ,
ବିଭୋରିତ ବୀଚିମାଳା ପରଶେ ଦିଗ୍‌ବଳ ।

ଥରେ ତାହା ଛୁଇଁଲେ ପ୍ରାଣକୁ
ଘୃଣା ହୋଇଯାଏ ଦୂର
ବାଟ ଛାଡ଼େ ପ୍ରୀତି ମଳୟକୁ,
ବହିବାକୁ ମୁଗ୍ଧ ମନ ବନେ
ଶୋଭିବାକୁ ତରୁ ବୀଥି, ଚର୍ଚ୍ଚିତ ଚନ୍ଦନେ ।

ମୃତ୍ୟୁଠାରୁ, ଶକ୍ତିଶାଳୀ ଅଟେ ଶ୍ରଦ୍ଧା ପ୍ରୀତି
ଦୁଃଖ ଦଗ୍ଧ ଜୀବନର ଅକ୍ଷୟ ବିଭୂତି,
ଦୂର କରେ ସନ୍ତାପ ନିକର
ସ୍ନେହ ସ୍ନିଗ୍ଧ ମୁଗ୍ଧ ହୃଦୟର ।

ସବୁ ମାନ, ଅଭିମାନ
ବିସର୍ଜିତ ଶ୍ରଦ୍ଧାର ସାଗରେ
ବିପୁଳ ବେଦନା ଲିଭେ
ଶ୍ରଦ୍ଧା ସିକ୍ତ ନୟନର ନୀରେ,
ପ୍ରୀତି, ପ୍ରେମ, ପ୍ରଣୟ ପ୍ରଣବ
ଉଚ୍ଚାରିତ ହେଲେ ଥରେ
ଉଦ୍‌ବେଳିତ ଅମୃତ ଅର୍ଣ୍ଣବ ।
ଶ୍ରଦ୍ଧାମୟ ଏ' ଜୀବନ, ପ୍ରୀତିର ପୂର୍ଣ୍ଣିମା
ଜ୍ୟୋତ୍ସ୍ନାୟିତ ଶାନ୍ତିମୟ ସ୍ନିଗ୍ଧ ଉଜ୍ଜ୍ୱଳିମା,
ସନ୍ତୋଷର ସୁଧା ସୁରଧୁନୀ
କରିଦିଏ ଜୀବନକୁ ପ୍ରୀତି ପୁଣ୍ୟ ଭୂମି ।

•

୬୭

# ପାଣ୍ଡବଙ୍କ ବନଯାତ୍ରା

ଦ୍ୱାଦଶ ବରଷ ବନବାସ ଯାତ୍ରା
କରିବେ ପାଣ୍ଡବ ଗଣ,
ମାଗନ୍ତି ମେଲାଣି ହସ୍ତିନା ନଗରେ
ଯେତେ ଯହିଁ ପ୍ରିୟଜନ ।

ହସ୍ତିନାପୁର ନିରବ ନିଥର
ସ୍ତବ୍ଧ ଚକିତେ ଚାହିଁ,
ନିରବେ କହୁଛି, "ହେ ପାଣ୍ଡବ ବୀର,
ଯାଅ ନାହିଁ, ଯାଅନାହିଁ ।

ସତ୍ୟ ନାମରେ ପାଳୁଅଛ ଯାହା
ନୁହେଁ ତା' ଅଙ୍ଗୀକାର
ପ୍ରତ୍ୟୟର ତା' ଅଟେ ପ୍ରତାରଣା,
ସତ୍ୟର ଅବିଚାର ।"
ମୌନ ପାଣ୍ଡବଗଣ
ପୁରବାସୀ ଦୁଃଖେ କରି ନ ପାରିଲେ
ଲୋତକ ସମ୍ୱରଣ ।

ଜନନୀ କୁନ୍ତୀ ନୟନୁ ବହୁଛି
ବେଦନା ଅଶ୍ରୁ ନଈ
ତରଳି ଯାଇଛି ଶତ ସଂଘାତ
ନିରବେ ଅଶ୍ରୁ ହୋଇ ।

ସମ୍ମୁଖେ ଦେଖି ସନ୍ତାନଗଣ,
ସତେବା ମୌନ ମୁନି
ଭାବ ଗମ୍ଭୀରେ ଦଣ୍ଡାୟମାନ
ଯିବେ ଶୁଭାଶିଷ ଘେନି,
ହାତଟେକି ମା' ଆଶିଷ ମୁଦ୍ରା ତୋଳି
ପୁତ୍ର ବଧୂକୁ କୋହ କମ୍ପିତେ
ନେଲେ ତାଙ୍କ ବୁକେ ତୋଳି ।

"ତୁମେ ବରିନେଲ ନିର୍ବାସନ ଗୋ !
ଏଥି ମୁଁ 'ନିର୍ବାସୀତା'
ଏଠାରେ ରହିବି ତୁମ ବାଟ ଚାହିଁ
ଅଭାଗିନୀ ଉପେକ୍ଷିତା
ଯାଅ ଯାଅ ଧନମଣି,
ତୁମ ସାଥେ ସାଥୀ ମା'ର ଆଶିଷ
ଅଭୟ ପଣତ କାନି ।
ଭରିବ ଶାନ୍ତି ସୁଧା,
ହରିବ ବିଘ୍ନ ବାଧା ।"

ଜନନୀ ଗାନ୍ଧାରୀ ବସିଥିଲେ ଚାହିଁ
ତୃତୀୟ ନୟନ ଫେଇ
ପୁତ୍ରର ପାପ କାଳିମା, ଆକାଶେ
ଭାସୁଛି ନୀଳିମା ହୋଇ ।
ଦୁଃଖ ଆବେଗେ ତୋଳୁଥିଲେ ସିଏ
ନିଃଶ୍ୱାସ ଘନଘନ,
ଶୂନ୍ୟ ବଳୟୁ ଶୂନ୍ୟତା ଆସି
ଭରୁ ଥିଲା ମନ ପ୍ରାଣ ।

ଏତେବେଳେ ଆସି ପାଣ୍ଡବଗଣ
ସମ୍ମୁଖେ ହେଲେ ଉଭା,
ସଦ୍ୟ ସେମାନେ ଭେଟି ଆସିଛନ୍ତି
କୁରୁପତି କୁରୁସଭା ।

"ଅଭୟ ଆଶିଷ ଦିଅଗୋ ଜନନୀ
ଯିବୁ ଆମେ ବନବାସେ
ଅମୃତ ମଧୁର ପରଶ ଲଭିବୁ
ବନ ଜନନୀର ହାସେ ।"

ବିଗଳିତ ସ୍ୱରେ କହିଲେ ଜନନୀ,
"ଦେଉଚି ମେଲାଣି ଧନ
ଏ ପୁରେ ରହିବ ଆମର ଶରୀର
ତୁମ ଠାରେ ଥିବ ମନ ।
ବନ ଜୀବନର ଶତ ସଙ୍କଟ
ଅସୁମାର ଦୁଃଖ ରାଶି,
ଶତ ଆହ୍ୱାନ ହେବ ସମ୍ମୁଖୀନ
ଆନନ୍ଦେ ହସି ହସି ।"

ଦ୍ରୌପଦୀଙ୍କୁ ସେ କୋଳେ ଟାଣି ନେଇ
କହିଲେ, "ପୁଣ୍ୟମୟୀ !
ତୁମ ପୁଣ୍ୟରେ ପ୍ଲାବିତ ହୋଇବ
ପତିତ ସେ ବନଭୂଇଁ,
ଶ୍ୱେତ ପଦ୍ମିନୀ ପରି
ବିକଚିତ ହେବ, ବିକଶିତ ହେବ
ଯଶ ସୌରଭ ଭରି ।
ପ୍ରିୟ ସନ୍ତାନ ଗଣ !
ପୂର୍ଣ୍ଣ କରହେ ପଣ ।!"

•

୬୮

# ନବ କଳେବର

ବିଶ୍ୱର ବିଶ୍ୱକର୍ମା
କରିଛନ୍ତି ସର୍ଜନା
ସୁନ୍ଦର ରୂପମୟ ସଂସାର,
ମାନବ ବିଶ୍ୱକର୍ମା
ଗଢ଼ ଦେବ ପ୍ରତିମା
ନିରାକାରଙ୍କୁ କର ସାକାର,
ମଣିଷ ରୂପେ, ଗଢ଼ ମୂରତି
ସେ ରୂପେ ଭର ଦିବ୍ୟ ବିଭୂତି ।

ମର୍ତ୍ତ୍ୟରେ ଜନ୍ମ ଦେଇ
ଜନ୍ମ ମୃତ୍ୟୁ ଘଟାଇ
ଅବିନଶ୍ୱରେ କର ନଶ୍ୱର,
ଘଟର ଘଟାନ୍ତର
ଏ’ ନବ କଳେବର
ମହା ଉତ୍ସବ ଏ’ତ ବିଶ୍ୱର
ଏ’ ମହାଜାଗତିକ ବିଧାନ,
ବିଭୁ ବିଗ୍ରହେ ପ୍ରତିଫଳନ ।

ହେ ପ୍ରଭୁ ! ଜଗନ୍ନାଥ
ଅଟ ଅପାଣି ପାଦ
ଅପୂର୍ଣ୍ଣ ଅଟେ ତୁମ ରଚନା,
ଅରୂପେ ରୂପାୟିତ
ଅପୂର୍ଣ୍ଣେ ପୂର୍ଣ୍ଣାୟିତ
ଶିଳ୍ପୀର ବ୍ରହ୍ମରୂପ କଳ୍ପନା ।

ନଥାଇ ହାତ ତୁମ
ଭକତେ ଆଲିଙ୍ଗନ
କରହେ ପ୍ରଭୁ ଭକ୍ତବତ୍ସଳ
ଯେ ଯାହା ମାଗେ ଦିଅ
ଭକତ ହାତୁ ନିଅ
ହେ ପ୍ରଭୁ ଶ୍ରଦ୍ଧାମୟ ଉଚ୍ଛଳ ।
ଅପାଦେ ଭ୍ରମ ବିଶ୍ୱ ଭୁବନ
ଅପୂର୍ଣ୍ଣେ ପୂର୍ଣ୍ଣତାର ମିଳନ
ଜଗତପତି ଜଗମୋହନ ।

ସସୀମେ ଅସୀମତା
ଭରି ମହା ଶୂନ୍ୟତା
ଆରୋପି ମହାଜ୍ୟୋତି ଅନ୍ତରେ,
କି ମହାମନ୍ତ୍ର ଜପି
ବିଗ୍ରହ ଅଛ ରଚି
ଭରି ବିଭୁ ବିଭୂତି ବିଧିରେ ।
କରିଛ ରତ୍ନ ବେଦି ମଣ୍ଡନ
ପ୍ରଣମେ ଶିଳ୍ପୀ ତୁମ ସର୍ଜନ ।

•

ବି.ଦ୍ର. ଶ୍ରୀ ଜିଉଙ୍କର ୨୦୧୫ ମସିହାର ନବକଳେବର ଉପଲକ୍ଷ୍ୟେ ରଚିତ ।

୬୯

# କ୍ଷମତା

ଦୁଃଖୀର ଦୁଃଖ ସୁଖୀର ସୁଖ
ଦର୍ପୀ ଅହଙ୍କାର
ଧୂଳିରେ ମିଶି ହୁଅଇ ଲୀନ
ଏ' ଲୀଳା ନିରନ୍ତର,
ଲାଗିଛି ଭବ ଭୂମେ
କ୍ଷମତା ଭୋଗୀ କ୍ଷମାରେ ଊଣା
ଏ' ମହାସତ୍ୟ ବୁଝି ବୁଝେନା
ସେ ଦିନେ ଧୂଳି ଚୁମେ ।

କାହାକୁ ଦିନେ କହେନି ସିଏ
ପଦିଏ ମିଠା କଥା
କାହାଠୁ କେବେ ଶୁଣେନି ସିଏ
ମରମ ତଳ ବଥା,
କ୍ଷମତା ମଧୁ ଚୋଷି
ଜୀବନେ ହୁଏ ବିଭୋର ସିଏ
ଅପରେ ପରାଭବ ସେ ଦିଏ
କାହାରି ମନ ପାରେନା କେବେ ତୋଷି ।

ଲିଭଇ ଦିନେ ମନରୁ ନିଶା
କାମନା କାଦମ୍ବରୀ
ସେ, ପାନ ପାତ୍ର ରିକ୍ତ ହୁଏ
ଯାଏ ତା' ସୁରା ସରି,

ନଥାଏ ପାଶେ ସାକୀ,
ପୂରାଇବାକୁ ପିଆଲା ତା'ର
ଅଧରେ ତୋଳି ସ୍ମିତଧାର
ପିନ୍ଧାଇବାକୁ ହାତରେ ପ୍ରୀତି ରାଖି ।
କହୁଛି ବନ୍ଧୁ ଶୁଣ !
ଜୀବନ ଜ୍ୟୋତି ଜାହ୍ନବୀକୁ
ଚଷକେ କେବେ ପାରିବ କରି ପୂର୍ଣ୍ଣ ??

●

୭୦

# ପ୍ରଣୟ ପରୀକ୍ଷା

ମହାକାଳ ବକ୍ଷେ,
ମହାଭ୍ରାନ୍ତି ଘଟିଥାଏ ନିରବେ ଅଲକ୍ଷ୍ୟେ,
ଉପୁଜାଇ ସଂହାର ଲୀଳା
ଅସୁମାର ବେଦନା ଉଚ୍ଛୁଳା ।

ମହାକବି ଅଭିମନ୍ୟୁ ସାମନ୍ତ ସିଂହାର
ପତ୍ନୀ ତାଙ୍କ ସତୀ ସାଧ୍ୱୀ,
ପତି ସେବା ବ୍ରତେ ସିଏ ମଗ୍ନ ନିରନ୍ତର,
ସେ ପ୍ରୀତି ଯମୁନା
ସମର୍ପିତା ସୁଭଗା ନବୀନା ।

ସାମାନ୍ୟ ବିଳମ୍ବ ହେଲେ ପତି ଆଗମନ
ଅଥୟ ହୋଇ ଚାହାନ୍ତି ଦାଣ୍ଡେ ଘନଘନ,
ଦିନେ ତାଙ୍କୁ ପଚାରିଲେ କବି,
"ସାମାନ୍ୟ ବିଳମ୍ବେ ମୋର
ଯାଉଅଛ ଦ୍ରବୀ !!
ଆକସ୍ମିକ ହେଲେ ମୋ' ମରଣ
ତୁମେ କି କରିବ ସଖୀ
ମୃତ୍ୟୁକୁ ବରଣ ?"

କବି ପତ୍ନୀ ହୋଇଲେ ଗମ୍ଭୀର
ଲୋତକାପ୍ଲୁତ ନୟନେ ଉତ୍ତରିଲେ,
"ପ୍ରାଣାଧିକ ପ୍ରାଣପ୍ରିୟ ମୋର !

ପତିବ୍ରତା ପତ୍ନୀ ପାଇଁ, ପତିହିଁ ଈଶ୍ୱର,
ଏହା ନୁହେଁ ମହାବାକ୍ୟ ଖାଲି
ପତି ବିନା ପତ୍ନୀ ପ୍ରାଣ ଦୁଃଖ ଚୋରାବାଲି,
ଜୀବନ.....ମରଣ
ଅଟଇ ସମାନ ।"

ଭାବିଲେ ଖିଆଲି କବି
ପରଖିବେ ଏ ପ୍ରୀତି ପ୍ରତ୍ୟୟ
ନିଶ୍ଚୟ....ନିଶ୍ଚୟ,
କହିଲେ ପତ୍ନୀଙ୍କୁ ଡାକି,
'ଯାଉଛି ମୁଁ ଏଠାରୁ ଦୂରକୁ
ଜମିଦାରୀ କାମ ବୁଝିବାକୁ,
ଫେରିବି ମୁଁ ଦିନେ ଦୁଇଦିନେ
ବନପଥେ ସାଥୀ ମୋର
ଆମ ଭୃତ୍ୟ ଜଣେ ।
ହେବ ନାହିଁ ବ୍ୟସ୍ତ
କାମ ସାରି ଫେରିବି ସମସ୍ତ ।"

ଦୁଇଦିନ ପରେ କବି ଫେରିଲେ ଘରକୁ
ଆଗରେ ପଠାଇଦେଲେ ବିଶ୍ୱସ୍ତ ଭୃତ୍ୟକୁ,
ହାତେ ଦେଇ, ପରିହିତ କୁଣ୍ଡଳ ମାଳା
କହିଲେ, "ବାବୁରେ ଆଉ କରନାହିଁ ହେଳା
ସାଆନ୍ତାଣୀ ଥିବେ ବାଟ ଚାହିଁ,
ଏ ସନ୍ତକ ହାତେ ତାଙ୍କ ଦେଇ
କାନ୍ଦି କାନ୍ଦି କହିବୁରେ
'ସାଆନ୍ତଙ୍କୁ ବାଘ ଦେଲା ଖାଇ ।'
ସ୍ତବ୍ଧ ଚକିତ ଭୃତ୍ୟ ବିଷାଦ ବିବଶ
କିପରି ଭରିବ ସିଏ ବିଶ୍ୱାସରେ ବିଷ
'ପାରିବିନି ପାରିବିନି ପ୍ରଭୁ !
ଏ' ପରୀକ୍ଷା କରନ୍ତୁନି
ସରି ଯିବ ସବୁ ।'

"ମୋ' ଆଦେଶ ନକର ଅମାନ୍ୟ
ପାରିବୁନି ରଖି ଆରେ ମୋ କଥା ସାମାନ୍ୟ ?
ଏହା ଆମ ତୁଚ୍ଛା ଅଭିନୟ
ଦେଉଛି ଅଭୟ ।"

ପ୍ରତୀକ୍ଷାରେ କବି ପତ୍ନୀ ହୋଇଥିଲେ ଛିଡା
ସମ୍ଭାଷିବେ ବୋଲି ସ୍ୱାମୀ ସେ ଘରବାହୁଡା,
ଦେଖିଲେ କାନ୍ଦୁଛି ଭୃତ୍ୟ
ହାତେ ତା'ର କୁଣ୍ଡଳ ଓ ମାଳା,
ବିକଳେ ସେ ପଚାରିଲେ,
କି ହେଲା..... କି ହେଲା ? ?
କାତରେ କହିଲା ଭୃତ୍ୟ,
"ସାଆନ୍ତଙ୍କୁ ଜଙ୍ଗଲରେ ବାଘ ଖାଇ ଦେଲା ।"

ଏକଥା ଶୁଣିଲାକ୍ଷଣି,
ପଥର ପାଲଟି ଗଲେ
ପ୍ରାଣବାୟୁ ଗଲା ତାଙ୍କ ଉଡି,
ବେଦନାରେ ଭୃତ୍ୟ ଛାଡେ ରଡ଼ି ।
କବି ଦେଖି ଏ କରୁଣ ଦୃଶ୍ୟ
ନିଜକୁ ଧିକ୍କାର କଲେ,
ନିଜ ହାତେ କଲେ ସର୍ବନାଶ ।
ପ୍ରତ୍ୟୟର କରି ପ୍ରତାରଣା
ଲଭିବାକୁ ହେଲା ଆଜି କି ଦୁଃଖ ଯାତନା ।
ଆସିଲା ବୈରାଗ୍ୟ ମନେ
ହୋଇଲେ ସେ ସଂସାର ବିରାଗୀ
ରାଧା କୃଷ୍ଣ ପ୍ରେମଭାବେ
ନିମଜ୍ଜିତ ହେଲେ ସଦା କବି,
ଲେଖନୀରେ ହେଲା ପ୍ରଖରିତ
ବିଦ୍‌ଗଧ ଚିନ୍ତାମଣିରେ ଝରାଇଲେ
ରାଧାକୃଷ୍ଣ ବିରହ ସଙ୍ଗୀତ ।

•

୭୧

# ଶୂଦ୍ରମୁନି

ଓଡ଼ିଆ ଜାତିର ପୁଣ୍ୟ ପୁରୁଷ
ଚିର ନମସ୍ୟ ସାରଳା ଦାସ,
ଓଡ଼ିଆ ଭାଷାର ମହାଭାରତର
ଶୂଦ୍ରମୁନି ସେ,
ଅମ୍ଳାନ ତାଙ୍କ କୀରତି ଯଶ ।
ସନ୍ଥ ସାଧୁ,
ଲେଖନୀରୁ ତାଙ୍କ ଝରିଛି ଦିବ୍ୟ
ମଧୁର ମଧୁ ।

ଝଙ୍କଡ ପ୍ରଗଣା, ତେନ୍ତୁଳିପଦାର
ସେ ଗ୍ରାମବାସୀ
ସିଦ୍ଧେଶ୍ୱର ପରିଡା ନାମରେ
ସେ ଥିଲେ ଚାଷୀ,
କରନ୍ତି କୃଷି
'ସାରଳା' ଭକତ ଭାବ ବିମୋହିତ
ଧରନ୍ତି ମସି
ମନ ପ୍ରାଣ ଦେଇ ଭକତି ଗ୍ରନ୍ଥ
ଲେଖନ୍ତି ବସି ।

ଦିନେ ସେ ଲଭିଲେ ମା' ସାରଳାଙ୍କ
ଦିବ୍ୟ ଆଶିଷ ସ୍ୱପ୍ନାଦେଶ,
"ଓଡ଼ିଆ ଭାଷାରେ କରତୁ ରଚନା
ମହାଭାରତ ଓ, ଶୁଦ୍ଧ ପୁରାଣ ଅଷ୍ଟାଦଶ ।"

କହିଲେ କବି,
"ଧନ୍ୟ ହେଲି ମୁଁ ଜଗତଜନନୀ !
ତୁମର ଦିବ୍ୟ ବିଭୂତି ଲଭି ।
ପଙ୍ଗୁ ହୋଇବି ଲଂଘିବ ଗିରି
ମୂର୍ଖ ଶୂଦ୍ର ହୋଇବ କବି
ବାମନ ହୋଇ ସେ ଚାନ୍ଦ ଆଣିବ
ଆକାଶରୁ ତୋଳି, ପାରୁନି ଭାବି,
'ମାଆ ଗୋ ମା' !
ଦିଅଁ ଗଢୁ ଗଢୁ ମାଙ୍କଡ଼ ଗଢ଼ିଲେ
କିଏ ହେବ ତା'ର ବିପଦେ ସାହା !"

ହସି ହସି ମା' କହିଲେ ତାହାଙ୍କୁ,
"ସାହସ କରି ତୁ ଲେଖନୀ ଧର
ଲେଖନୀ ମୂନରୁ ଝରିବ ବାବୁରେ !
ବାଗଦେବୀ ବାକ୍ ଅମୃତ ଝର ।
ଲେଖିସାରି ପୋଥି ତାଳପତ୍ରକୁ
ଚନ୍ଦ୍ରଭାଗା ସ୍ରୁଏ ଦେବୁ ଭସାଇ,
ଭାସି ଯାଇ ତାହା କୂଳରେ ଲାଗିବ
ଗୋଟି ଗୋଟି ପତ୍ର ନେବୁ ଗୋଟାଇ ।

ଶିରରେ ଛୁଆଇଁ ପତର ଗୁଡିକୁ
ଅତି ଯତନରେ କରିବୁ ବିଦା,
ସବୁ ଦୋଷାଦୋଷ ଦୂର ହୋଇଯିବ
ଶୂଦ୍ର ମୁନି ମହାଭାରତୁ ପରା ।
ଗାଁ ଭାଗବତ ଟୁଙ୍ଗିରେ ନିତି
ପଢ଼ା ହେବ ସଞ୍ଜେ ଯେବେ ଯାଏ ଥିବ
ଓଡ଼ିଆ ସଂସ୍କୃତି ଓଡ଼ିଆ ଜାତି ।"

ମା'ଙ୍କୁ ସୁମରି ଏ ମହାଭାରତ ଲେଖିଲେ କବି
ଖାଣ୍ଟି ଓଡ଼ିଆ ଶବ୍ଦ ମାଳାରେ ଆଙ୍କି ଛବି,
ଓଡ଼ିଶାର ନଦୀ ବନ ପର୍ବତ ପ୍ରପାତ ଧାରା
କରିଲେ ବର୍ଣ୍ଣନା ଓଡ଼ିଆ ସଂସ୍କୃତି ପରମ୍ପରା,
ଅମୃତ ମୟ
ଓଡ଼ିଆ ଜାତିର, ଓଡ଼ିଆ ଭାଷାର
ପ୍ରାଚୀନ ପଣର ଏ' ପରିଚୟ ।
ଧନ୍ୟ କବି !
ତୁମେ ଏ ଜାତିର ଓଡ଼ିଆ ଭାଷାର
ଦୀପ୍ତ ରବି ।

•

୭୨

# ସ୍ନେହ ମନ୍ଦାକିନୀ

ସ୍ନେହ ମନ୍ଦାକିନୀ !
କାହିଁ ତୁମେ ହୋଇଗଲ
ରସାତଳଗାମୀ,
ଆଗୋ ! ସ୍ନେହ ମନ୍ଦାକିନି !

ଚତୁର୍ଦ୍ଦିଗେ ଛଳନାର
ଛବିଳ ସଂସ୍କୃତି,
ସମ୍ପର୍କେ ଦେଖୁନି କାହିଁ
ସ୍ନିଗ୍ଧ ଅନୁଭୂତି ।
ହୃଦୟର ନାହିଁ ଆଲୋକନ
ନାହିଁ ଉଦାରତା ତହିଁ
ସ୍ୱପ୍ନିଳ ସର୍ଜନ ।
ନାହିଁ ତହିଁ ମୁଗ୍ଧ ଅନୁଭବ
ଯାହା ଭରି ଦେଇ ପାରେ
ଜୀବନରେ ସଂପ୍ରୀତି ସୌରଭ ।

ଆଗୋ, ସ୍ନେହ ମନ୍ଦାକିନି !
କରୁଛି ପ୍ରାର୍ଥନା କବି
ଆସ ଆସ ପ୍ରୀତି ସୁରଧୁନୀ,
ବହିଯାଅ ମେଦିନୀର
କୋଣେ ଅନୁକୋଣେ
ଏ' ମାନବ ଜୀବନର
ତୃଷିତ ପରାଣେ,
ଚୋଲୁ ସିଏ ତୃପ୍ତିର ନିର୍ଘୋଷ
ଏ ସଂସାର ତା' ଅଭାବେ ନିସ୍ୱ ।
ସ୍ନେହ ଶ୍ରଦ୍ଧା ଦୟା କ୍ଷମା କରୁଣା ପରଶେ
ଏ ଜଗତ ଭରି ଉଠୁ ବିପୁଳ ହରଷେ ।

•

୭୩

# ମହା ନାୟକର ମହାଯାତ୍ରା

ଭାରତ ଜନନୀ ନୟନର ମଣି
ହରାଇ କାନ୍ଦୁଛି ଆଜି,
ତା' ହୃଦୟ ରତ୍ନ ହଜି ଯାଇଅଛି
ବିଷାଦେ ପଡିଛି ଭାଜି ।
କିଏ ଶୁଣାଇବ ଆଶ୍ୱାସନାର ବାଣୀ
ତା' ପାଇଁ ଝୁରୁଛି ଏଇ ମାଆ ମାଟି
ନୟନୁ ଝରୁଛି ପାଣି ।
ଅଭିମାନୀ...ଅଭିମାନୀ ।

ବନ୍ଦିତ ସିଏ ମଣ୍ଡିତ ସିଏ
ବିଶ୍ୱର ଦରବାରେ,
ତାଙ୍କ ଜନ୍ମ ଦିନେ, ଜାତିସଂଘ ଆଜି
'ଛାତ୍ର ଦିବସ' ପାଳେ ।
ତା' ମର ଶରୀର ମାଟିରେ ଯାଇଛି ମିଶି,
ତା' ଯଶ ଶରୀରେ ଦୀପ୍ତିମାନ ସେ
ସତେ ପୂର୍ଣ୍ଣିମା ଶଶି
ସତେ ପୂର୍ଣ୍ଣିମା ଶଶି !!

ସେ ଦୀପ ଜଳୁଛି ଜଳିବ ସେପରି
ଅନିର୍ବାଣ ସେ ଶିଖା,
ମହାକାଶର ସେ ବିଜ୍ଞାନୀ ରୂପେ
ନେଲେ 'ମହାକାଶ ଦୀକ୍ଷା' ।
ଗବେଷଣାଗାରେ ଧ୍ୟାନରେ ଥିବେ ସେ ମଗ୍ନ
ମହାଶୂନ୍ୟକୁ ଜୟ କରିବାକୁ
ଖୋଜୁଥିବେ ଶୁଭ ଲଗ୍ନ
ଖୋଜୁଥିବେ ଶୁଭଲଗ୍ନ ।

ସ୍ୱପ୍ନଦ୍ରଷ୍ଟା ସେ 'ମହାବିଜ୍ଞାନୀ'
ମହାନ୍ ଦାର୍ଶନିକ,
'ଗୁରୁ' ଗୌରବେ ସମ୍ମାନିତ ସେ
ଦିବ୍ୟ ମଣିଷ ଏକ ।
ମାନବ ସେବାର ମହାନ୍ ମନ୍ତ୍ର ଗାଇ
ବିଜ୍ଞାନେ ଜୟ ଯାତ୍ରା ତୋଳିଲେ
ମାନବର ସେବା ପାଇଁ ।

ମହାଭାରତର ମହାନାୟକ ହେ !
ଜାତିର ମଙ୍ଗ ଧରି,
ଅନ୍ତରୀକ୍ଷକୁ ରକେଟ୍ ଛାଡ଼ିଲ
ଜଗତ ସ୍ତବ୍ଧ କରି ।
ପୋଛି ଦେଲ ହୀନମନ୍ୟତା ଆମ ମନୁ
ଦୂର କରିଦେଲ ଦୀନତା ହୀନତା
ଅଭାବିତ ଅଭିମାନୁ ।

ସଲାମ କଲାମ୍, ଆହେ କର୍ମଯୋଗୀ
'ମାନବ ଧର୍ମ' ଗୁରୁ,
ଆହେ ବିଜ୍ଞାନୀ ! ଆହେ ପ୍ରଜ୍ଞାନୀ
ତବ... ଶୁଭାଶିଷ ଝରୁ ।
ତୁମେ ତ ଉର୍ଦ୍ଧ୍ୱରେତାଃ
ତୁମର 'ଜୀବନୀ' ଜଗତ ଜନର
ହେଉ ପ୍ରେରଣାର ଗୀତା ।
ବାହୁନି ଝୁରିବ ତୁମର 'ରୁଦ୍ରବୀଣା'
ନିରବି ଯିବ ସେ ଚିରଦିନ ପାଇଁ
ଅମୃତ ହାତ ବିନା ।

•

ବି.ଦ୍ର. ରାଷ୍ଟ୍ରପତୀ ଅବଦୁଲ କଲାଙ୍କ ମହାପ୍ରୟାଣ (୨୭.୭.୨୦୧୫) ଉପଲକ୍ଷ୍ୟେ ରଚିତ ।

୭୪

# ସତ୍ୟାନୁଭୂତି

ସ୍ପର୍ଦ୍ଧାରେ ସ୍ପର୍ଦ୍ଧିତ ବୁକୁ, ଉନ୍ନତ ମସ୍ତକ
ଚାଲିଅଛି ରାଜପଥେ ରୂପବତୀ ଏକ,
ସ୍ୱଚ୍ଛ ବସ୍ତ୍ରେ କରେ ତା'ର ଯୌବନ ପ୍ରଚାର
କ୍ଷୁଧାତୁର ନୟନର ଦଂଶନେ ଆତୁର
ସେ ତରୁଣୀ ରାଣୀ,
ରୂପ ମନ୍ଦାକିନୀ ।

ପଥରେ ଭେଟିଲେ ଏକ ଯୁବକ ତପସ୍ୱୀ
ହେଲା ସତେ, ଯଥା ଭେଟ ଉଷା ଓ ଉଷସୀ,
ନିମିଷକେ ନୟନ ମିଳନ
ସଂଗୋପନେ ଚଳଲୋକ ଚିତ୍ତର ଦହନ
ଦୁହେଁ ଗଲେ ଭଳି,
ତାରୁଣ୍ୟକୁ ତଉଲି ତଉଲି ।

ଭେଟ ହେଲା ପୁଣି ଏକ ବୃଦ୍ଧ ଦମ୍ପତିରେ
ଚାଲିଛନ୍ତି ସାଥି ହୋଇ ଆନନ୍ଦ ମନରେ,
ଚାଲି ଗଲା ତାଙ୍କୁ ଅତିକ୍ରମି
ଚାହିଁଲାନି ସେ ଉଜୁଡା ଯୌବନ ଭୂମି ।
ବାର୍ଦ୍ଧକ୍ୟ ଆସର
ଯାହା ପାଇଁ ମନେ ତା'ର ଡ଼ର ।

ବୁଲାରି କୁକୁର ଦଳ ରାସ୍ତାର ପ୍ରହରୀ
ଘେରି ଗଲେ ବିକଟାଳ ଚିତ୍କାର ତୋଳି ,
କେ' ଉଦ୍ଧତ ଏ' ଅପରିଚିତା !
ପଶିଛି ତାଙ୍କ ଏ ରାଜ୍ୟେ
ପ୍ରଚାରୁଛି ସ୍ପର୍ଦ୍ଧାର ବାରତା ।।

ଦଉଡ଼ି ଆସିଲେ ବୃଦ୍ଧ ଧରି ତାଙ୍କ ବାଡ଼ି
ହଟିଲେ କୁକର ଦଳ ତୋଳି ଗୁରୁ ରଡ଼ି,
ଭୟେ ବାଳା ଗଲାନି ଆଗକୁ
ଦମ୍ପତିଙ୍କ ସାଥେ ସାଥି ହେଲା ବୁଲିବାକୁ ।
ଥରୁଛି ଶରୀର
ନିର୍ଭୟ ଏଥର ।

ଶ୍ରଦ୍ଧାଶୀଳା ବୃଦ୍ଧା ତାଙ୍କୁ କହିଲେ ବୁଝାଇ
'ଯୁବତୀ ଜନର 'ଲଜ୍ଜା' ଭୂଷଣ ଅଟଇ,
ସେ ଭୂଷଣେ ହୁଅ ଆଭୂଷିତା
ତାହା ହେବ ରୂପଶ୍ରୀର ପବିତ୍ର ବାରତା ।

ପୋଷାକରେ ପ୍ରକଟିତ ବ୍ୟକ୍ତିତ୍ୱର ଛବି
ଆଚରଣ, ଉଚ୍ଚାରଣ, ସଂସ୍କାର ସୁରଭି,
ମଖା ତହିଁ ଚରିତ ଚନ୍ଦନ
ଖିଆଲରେ କର ନାହିଁ ତାର ଉଲଙ୍ଘନ ।
ସଂଯମରେ, କର ଶତ ନୟନକୁ ତୋଷ
ଲଭିବ ଆଶିଷ ମାଗୋ ! ଲଭିବ ଆଶିଷ ।
ନାରୀତ୍ୱର କର ଜୟଗାନ,
ସମ୍ଭ୍ରାନ୍ତ ସମ୍ଭ୍ରମପଣେ ଭରି ଦେଇ ମନ
ହୁଅ ବିଭାମୟୀ
କନ୍ୟା ମମ ଅୟି !'

•

ବି.ଦ୍ର. : ପ୍ରାତଃ ଭ୍ରମଣ କାଳୀନ ଏକ ସତ୍ୟାନୁଭୂତିର ଛାୟାଲେଖ ।

୭୫

# ବିସର ମହାନ୍ତି ଧନ୍ୟ ତୁମେ

ବିସର ମହାନ୍ତି ଧନ୍ୟ ତୁମେ ହେ ଧନ୍ୟ ତୁମେ !
ତୁମ ପଦେ ମୋର କୋଟି ପ୍ରଣାମ
ତୁମ ଭାବରୂପ ପଦ ମୁଁ ଚୁମେ,
ବିସର ମହାନ୍ତି ଧନ୍ୟ ତୁମେ ।

ଆସିଲା ମୋଗଲ କଳାପାହାଡ଼
ଅତ୍ୟାଚାରୀର ସାଥିରେ ଅଛନ୍ତି
ସଇନ୍ୟ ଦଳ
ଭାଙ୍ଗିଲେ କୋଣାର୍କ ମନ୍ଦିର ଚୂଳ
ମୂରତି ଗଣ,
ମୁହାଁଇଲେ ପୁରୀ, ପ୍ରଳୟ କୁହାଟେ
ବଡ଼ ଦେଉଳକୁ ଭାଙ୍ଗିବେ ପୁଣ ।

ଭୟରେ ସେବକେ ଠାକୁରଙ୍କୁ ଆଣି
କଲେ ପାତାଳି,
ଦେଖିଲେ ସୈଇନ୍ୟ ରତ୍ନବେଦି ଶୂନ
ରାଗରେ ଜଳି
ଭାଙ୍ଗିଲେ ଦେଉଳ ସେ ଅଧାଯାଏ,
ଖୋଜିଲେ ଠାକୁର ପାଇଲେ ଶେଷରେ
ପାତାଳି ଠାଏ ।

ପାଗଳର ପ୍ରାୟେ ଆନନ୍ଦେ ନାଚିଲା କଳାପାହାଡ଼
ନାଚିଲେ ସଇନ୍ୟ କି କୋଳାହଳ !
ହାତୀରେ ବସାଇ ନେଲେ ମୂରତିଙ୍କୁ ଗଙ୍ଗାକୂଳେ
ସଦଳବଳେ ।

କାଠ ଆଣି ଗଦା କରିଲେ ତହିଁ,
ହାତୀରୁ ଓହ୍ଲାଇ ମୂରତି ଗୁଡ଼ିକୁ ଥାପିଲେ ନେଇ ।

ଚାରିପାଖ ବୁଲି ନାଚିଲେ ସରବେ
ହାଃ...ହାଃ ହସେ କଳା ପାହାଡ଼
ଅଗ୍ନି ସଂଯୋଗ କରିଲା ସେଥିରେ
ଦେଖାଇଲା ତାର ବହପ ବଳ,
ଲାଗିଲା ନିଆଁ
'କାଳିଆ' ଦିହରୁ ବାହାରିଲା ଖାଲି
କାଳିଆ ଧୂଆଁ ।

କି ହେଲା.....କି ହେଲା ରାଗିଲେ 'ଢଗା',
କଳାପାହାଡ଼ର ହାତଗୋଡ଼ ଫାଟି
ହେଲା ଅଲଗା ।
ଡରିଗଲା କଳାପାହାଡ଼ ପୁଅ
ମୂର୍ତ୍ତି ଗୁଡ଼ିକୁ ନିଆଁରୁ ଉଠାଇ
ଛାଡ଼ି ଦେଲା ଯହିଁ ପ୍ରଖର ସୁଅ
ଗଙ୍ଗା ଜଳେ,
ପ୍ରାଣ ବିକଳେ ।

ତଳ ମୁଣ୍ଡେ କିଏ ବୁଲୁଛି ଉଣ୍ଡି
ଦେଖିଲା ସୁଅରେ ଭାସି ଆସୁଅଛି
ସେ କାଠ ଗଣ୍ଡି ।
ଯତନରେ ତାକୁ ସଂଗ୍ରହ କରି
ଘରକୁ ନେଲା,
ଜାଳ କାଠ ଭାବି ବାଡ଼ିରେ ତାହାର
ଗଦେଇ ଦେଲା ।

ବୈଷ୍ଣବ ବେଶେ ବିସର ମହାନ୍ତି
ଠାକୁରଙ୍କ ପଛେ ଗୋଡ଼େଇ ଥିଲେ
ମୃଦଙ୍ଗ ବଜାଇ ଗାଁ ଦାଣ୍ଡରେ
ନିତି ନିତି ସିଏ କୀର୍ତ୍ତନ କଲେ ।
ଦିନେ ସାବଧାନେ ସୁଯୋଗ ଉଣ୍ଡି
ତା' ବାଡ଼ିରେ ପଶି ଖୋଜିଲେ ଦାରୁଙ୍କୁ
ଆଡ଼େଇଲେ ବସି ସେ କାଠ ଗଣ୍ଡି,
ପାଇଲେ ଶେଷେ,
ତଳେ ପଡ଼ିଛନ୍ତି ଦରପୋଡ଼ା ଦାରୁ,
ମହା ହରଷେ
କାଢ଼ିଲେ "ବ୍ରହ୍ମ"
ମୃଦଙ୍ଗ ଗରଭେ ଲୁଚାଇ ରଖିଲେ
ଦେବ ପରମ ।
କାନ୍ଧରେ ଝୁଲାଇ ମୃଦଙ୍ଗଟିକୁ ଯତନ କରି
ବୈଷ୍ଣବ ବେଶରେ ଆସିଲେ ଫେରି
ସେ ପୁରୀ ପଥେ
କେଡ଼େ ଉସତେ ।

ନୂଆ ଦାରୁ ଖୋଜି ଗଢ଼ିଲେ ମୂର୍ତ୍ତି
ବ୍ରହ୍ମଥାପି ତହିଁ ରଖିଲେ କୀର୍ତ୍ତି
ଧନ୍ୟ ବିସର !
ତୁମ ପଦେ ଅର୍ପୁ କୋଟି ଜୁହାର
କୋଟି ଜୁହାର ।।

•

ତଥ୍ୟସୂଚନା : ଜଗବନ୍ଧୁ ସିଂହଙ୍କ ପ୍ରଣୀତ "ପ୍ରାଚୀନ ଉତ୍କଳ" ପ୍ରଥମ ଭାଗ ।

୭୬

# ଅସୁମାର ସପନ

ଏଇ ଦେଖ, ମୋ' ମନର
ଅସୁମାର ସପନ,
ଏଇଠେ ହୁଅନ୍ତି ଉଦେ
ଚାନ୍ଦ ତାରା ତପନ ।
ଅସୁମାର ସପନ ମୋ' ଅସୁମାର ସପନ ।

ବାଳରବି କିରଣକୁ କରେ ଫଗୁବରଣା
ଚାନ୍ଦର ଲପନରେ ଲେପିଦିଏ ଜୋଛନା,
ହୋଇଯାନ୍ତି ହସକୁରୀ ବଧୂଗୋ !
ଝରିଯାଏ ମମତାର ମଧୁ ଗୋ !

ବିରହର ବିଧୁରିତ ଲଗନେ
ସପନେ ଗୋ ସପନେ,
କଳ୍ପନା ରାଣୀ ଆସି
ପକାଏ ଗୋ ଚହଲ,
ଆଙ୍କେସେ ମନୋରମ
ଛବିଟିଏ ଛଇଳ ।
କବି ମନ ସପନର ଲୀଳା ତୀର୍ଥ ଜଳରେ
ବୁଡ଼ିଯାଏ, ହଜିଯାଏ, ଭୋଳରେ ସେ ଭୋଳରେ ।

ଜୀବନେ ଘଟିଛି କେତେ ଅସୁମାର ଘଟଣା
ସପନର ସ୍ମୃତି ମନେ ସବୁବେଳେ ଅରଣା,
ତାହା କବି କଲମକୁ କରେ ନିତି ଅଥୟ
ସୃଷ୍ଟି କରେ କବି ତା'ର, କବିତାର ବଳୟ ।
ପକାଏ ସ୍ମୃତିର କେତେ
ମୁରୁଜ ଓ ମଣ୍ଡଳ,
କେତେ ଲିଭେ, କେତେ ରହେ
ସପନର ଶେଯେ ଶୁଏ,
କେତେ କବି କଲମରେ
ହୋଇ ଉଠେ ଚହଲ
ସପନ ତା' ବହଳ ।

•

୭୭

# କପଟ ଯଜ୍ଞ

ତୁମେ ପ୍ରିୟଦର୍ଶୀଶାସକ ଅଶୋକ
ଦୀର୍ଘ ସମୟ, କଲ ରାଜୁତି,
ତୁମେ ଥିଲ ପରା ଅଜାତ ଶତ୍ରୁ
ଏ ଭାରତ ଭୂମେ ରଖି କୀରତି ।

ଚଣ୍ଡ ଅଶୋକ ! ଧର୍ମ ଉତ୍ତରୀ ପିନ୍ଧି ତୁମେ
ଧର୍ମାଶୋକରେ ପରିଣତ ହେଲ ଏ ମହା ଭୂମେ,
ଅଛି କି ମନେ ।
ଶାସ୍ତ୍ର ବିନୋଦୀ, ଶାସ୍ତ୍ର ରକ୍ଷଣା ଏ'କବି କୂଳ
ଦେଇଛନ୍ତି ଯେଉଁ ଅଭିଶାପ ତୁମେ,
ହେବକି ଦୂର
ହେବକି ଦୂର ? ?

ବାହୁବଳେ ତୁମେ ଜୟ କରିଲ ଯେ
ବିଶାଳ ଭୂଭାଗ, କରିଲ ଖାଲି
ରକ୍ତ ନଦୀରେ ଭାସୁଛି ଯେ ନାବ
କାଳ ସ୍ରୋତରେ ତା' ପଡ଼ିବ ବୋଲି !
ବିଜୟରେ ତୁମ କେତେ ପରାଜୟ
ରହିଛି ଲୁଚି,
ଉଲଙ୍ଘନ ତୁମେ କରିଛ ରାଜନ !
'ମାନବ ବାଦ'ର ପରମ ନୀତି

ପ୍ରଚାର କରିଲ, ଜନ ମନେ ତୁମେ
ସଂଚାରି ଭୟ,
ଦେଲି ରାଜାଦେଶ,
"ଯାହାପାଶେ ଅଛି ଯେ ଶାସ୍ତ୍ର ଚୟ,
ବେଦ ଭାଗବତ ପୁରାଣ ପୋଥି
ଯାହାପାଶେ ଯାହା ଅଛି ଦେଇ ଦିଅ
କର ନାହିଁ କଦା ଅନ୍ୟଥା ଏଥି
ଯିଏ ନ ମାନିବ ଲଭିବ ସଜା
ରାଜ ଦରବାରେ ଦେଇ ଦେଲେ ସବୁ,
ଭୟରେ ପ୍ରଜା ।
ଦିଶେ ପୋଥିଗଦା ପାହାଡ଼ ସମ
ହସି ହସି ରାଜା ହେଲେ ବେଦମ୍ ।

ଏକ ସୁବିଶାଳ ଯଜ୍ଞକୁଣ୍ଡ ତହିଁ
ନିର୍ମିତ ହୋଇଲା ରାଜା ଆଦେଶେ,
ମହାଯଜ୍ଞ ନୀତି ଆରମ୍ଭ ହୋଇଲା
ବସିଲେ ରାଜନ ଯାଜ୍ଞିକ ବେଶେ
ମନେ ମନେ ସବୁ ଭାବିଲେ ପ୍ରଜା
ପ୍ରାୟଶ୍ଚିତ ହୋମ କରନ୍ତି ରାଜା ।

ପଡ଼ିଲା ଆହୁତି ଗୋଟି ଗୋଟି ପୋଥି
ଲହ ଲହ ଜିହ୍ୱା ସେ ହୋମା ନଳେ
ସବୁ ପୋଥି ପୋଡ଼ି ପାଉଁଶ ହୋଇଲା
ପୂରାଇଲେ ଲକ୍ଷ୍ୟ, ରାଜା ଖୁଆଲେ
ମନ ହେଲା ତୃପତି
ରୋକିବାକୁ ହେବ ବୈଦିକ ଧର୍ମର ଅଗ୍ରଗତି ।

ପ୍ରଚାର କରିଲେ ରାଜ୍ୟ ସାରା
ବୌଦ୍ଧ ଧର୍ମ, ସାରା ରାଜ୍ୟରେ ଗୃହୀତ ହେଲା,
ଚଣ୍ଡାଶୋକର ବର୍ବରତା
କାଳ କାଳ ଧରି ପ୍ରଚାର କରୁଛି, ପ୍ରବାଦ କଥା ।

ଇତିହାସ, ତୁମ ରଖିଛି ଟେକ
ଚଣ୍ଡାଶୋକକୁ ଧର୍ମାଶୋକର
ଦେଇଛ ଭେକ ।
ତଥାପି ତୁମେ ହେ ପୁଣ୍ୟଶ୍ଳୋକ,
ବହୁ କୀର୍ତିର ଅଧିକାରୀ ତୁମେ
ଚଣ୍ଡାଶୋକ ହେ ଧର୍ମାଶୋକ ।

●

୭୮

# ବାଳଧୂପ

ଆହେ ଗଙ୍ଗବଂଶୀ ଶାସକ ଗଣ
ତୁମେ ଥିଲ ଖାଣ୍ଟି ଓଡ଼ିଆ ଶାସକ
ଓଡ଼ିଆ ଜାତିର ରଖିଲ ଟାଣ....
ଓଡ଼ିଆ ପଣ,
ମହା ଶୂର ବୀର ପ୍ରତାପୀ ଗଣ ।

ଭାନୁ ନରସିଂହ, ହେ ଗଜପତି !
ଯଶସ୍ୱୀ ଶାସକ, କବି, ଦରଦି,
ବହୁଥିଲା ନଈ ବାଙ୍କି ମୁହାଁଣୀ
ବଡ଼ଦାଣ୍ଡ କରି ଦି'ଭାଗ ପୁଣି
ପୋତିଲ ତାକୁ
ଗୋଟାଏ କରିଲ ବଡ଼ ଦାଣ୍ଡକୁ ।

କରାଇଲ ବିଜେ ବଡ଼ ଠାକୁରେ-
ଛଅ ରଥ ଛାଡ଼ି ତିନି ରଥରେ,
ଭକତେ, ସେବକେ ସଭିଏଁ ଖୁସୀ
ରଥ ଗଡ଼ି ଚାଲେ ଚୁଣ୍ଡିଚା ଘରକୁ-
କେଡ଼େ ପ୍ରମୁଦିତ ଜଗତବାସୀ ।

ମନ୍ଦିର ତୋଳିଲ ବଳଗଣ୍ଡି ଠାରେ
ସେ ମନ୍ଦିର ନାମ 'ମାଉସୀ ମା',
ବାହୁଡ଼ା ବାଟରେ ଜଗତ ନାଥଙ୍କୁ
ବଢ଼ା ହୁଏ ପୋଡ଼ ପିଠାର 'ଠା'
ଆନନ୍ଦେ ଖାଇ,
ଫେରନ୍ତି ମନ୍ଦିରେ ଜଗତ ସାଇଁ ।

ବନ୍ଧାଇଲ ରାଜା ଅଠର ନଳା
ଚାରି ନଳା ପୁଣି ନିର୍ମିତ ହେଲା,
ରଖିଲ ନାଁ
ନରେନ୍ଦ୍ର ପୋଖରୀ ଖୋଳାଇ ତୋଷିଲ
ସେ ଚଉବାହା ।

ଗଙ୍ଗବଂଶେ ଆଉ ଜଣେ
ଥିଲେ ମହାରାଜା
'ନିସଙ୍ଗ ଭାନୁ' ନାମରେ
ପାଳନ୍ତି ପରଜା ।

ଦିନେ ପ୍ରଭୁଙ୍କ ଦର୍ଶନେ
ବିଜେ ଶ୍ରୀମନ୍ଦିରେ
ନଥିଲା ଫୁଲ ପ୍ରସାଦ
ପୂଜିବେ ଠାକୁରେ ।

ପଣ୍ଡା, ଶିର ଦୟଣାରୁ
ଦେଲେ କିଛି ନେଇ
ଅଜାଣତେ ରହିଥିଲା
ଏକ କେଶ ତହିଁ,
କ୍ରୋଧେ ରାଜା ପୁଚ୍ଛିଲେ ପୂଜକେ
କେଉଁଠୁ ଆସିଲା ବାଳ...
କୁହ ହେ ସେବକେ ।

ଭୟେ ପଣ୍ଡା ଉତ୍ତରିଲେ,
ମୁଁ ଭାବୁଛି ଯାହା,
ଶ୍ରୀ ଜୀଉ, ଶ୍ରୀ ଶିର କେଶ,
ହୋଇପାରେ ତାହା ।

ରାଜା ତହୁଁ ହୋଇଲେ ବିସ୍ମିତ
କହିଲେ,
"ପାହନ୍ତି ଦର୍ଶନ ବେଳେ
ପରଖିବେ, କଥା କେତେ ସତ ।"
ଫେରିଲେ ନଅରେ
କ୍ରୋଧେ...ସନ୍ଦେହରେ ।

ପ୍ରଭୁଙ୍କ ଶ୍ରୀପଦେ ପଣ୍ଡା
ପଶିଲେ ଶରଣ
ରକ୍ଷାକର ସେବକରେ
ଭୁବନ ମୋହନ ।
ରାଜା, ସ୍ୱପ୍ନ ଦେଖିଲେ ରାତିରେ
ପ୍ରଭୁ ତାଙ୍କୁ କହୁଛନ୍ତି,
ଦଣ୍ଡିବୁନି ମୋ ପ୍ରିୟ ପଣ୍ଡାରେ;
ଦେଖିବୁ ଦର୍ଶନ ବେଳେ କେଶାଶ୍ରିତ ଶିର
ନହୁଅ ଅସ୍ଥିର ।

ପାହାନ୍ତି ଅବକାଶ ଦର୍ଶନ ବେଳେ
ଦେଖିଲେ ରାଜା, କେଶ ପ୍ରଭୁଙ୍କ ଶିରେ
ସେ ହେଲେ ଆତ୍ମହରା ଦେଖି ପ୍ରଭୁଙ୍କୁ
ଖଞ୍ଜିଲେ 'ବାଲଧୂପ' ନୀତି ସେବାକୁ ।
ସେ ଧୂପ ଶ୍ରୀ ମନ୍ଦିରେ ଚାଲିଛି ଆଜି
ନାହାନ୍ତି ରାଜା, ଅଛି ତା' ନୀତି ସାଜି ।

ଆଉ ଜଣେ ଥିଲେ ଯଶସ୍ୱୀ ନରେଶ
ଲାଙ୍ଗୁଳା ନରସିଂହ,
'କୋଣାର୍କ ମନ୍ଦିର' ନିର୍ମାଣ କରି
ଅମର କୀର୍ତ୍ତିବନ୍ତ ।
ଯେପରି ପ୍ରତାପୀ ସେପରି ପ୍ରକୋପୀ ସେହୁ,
ସର୍ପପରି ତାଙ୍କ କୋପନ ପ୍ରକୃତି
ଶତ୍ରୁ ନବର୍ତ୍ତେ କେହୁ ।
ସେଥିପାଇଁ ନାମେ,
ଲାଙ୍ଗୁଳ ଲାଗିଛି ପରା
କ୍ରୋଧରେ ସର୍ପ ଛିଡ଼ା ହୋଇଯାଏ
ଲାଞ୍ଜରେ ଦେଇ ଭରା ।

•

୭୯

# ପ୍ରାଚୀନ ଉତ୍କଳ

ମନେପଡ଼େ ଉତ୍କଳର ପ୍ରାଚୀନ ଗୌରବ
ଚତୁର୍ଦିଗେ ମହକିତ ଯଶର ସୌରଭ,
ଧନ, ମାନ, ଧର୍ମ, କଳା, ସାହିତ୍ୟ, ସଂସ୍କୃତି
ଲଭିଲା ଉତ୍କର୍ଷ ଦିନେ ଏ ଓଡ଼ିଆ ଜାତି,
ସାରା ବିଶ୍ୱେ ହେଲା ପରିଚିତ,
ଉତ୍କଳର, ଉତ୍ କଳା ସାହିତ୍ୟ ।

ଦିନେ ଥିଲା କ୍ଷେତ ତା'ର ଶସ୍ୟ ଶ୍ୟାମଳିମା
ଛୁଇଁଥିଲା ତା ବିସ୍ତାର ଦିଗ୍‌ବଳୟ ସୀମା,
ଧନରେ ଉଚ୍ଛୁଳୁଥିଲା ତା' ଲକ୍ଷ୍ମୀଭଣ୍ଡାର
ମଣି ମାଣିକ୍ୟ ରତ୍ନରେ ଭରା ପଣ୍ୟାଗାର,
ଅସରନ୍ତି ଦୁର୍ଲଭ ବିଭବ
ବିତ୍ତଶାଳୀ ତା' ସାଧୁ ସାଧବ ।।

ଦରିଆରେ ଦେଉଥିଲା ମେଲି ତା' ବୋଇତ
ବନ୍ଦାନ୍ତି ସାଧବ ବୋହୂ, ତା'ର ପଣ୍ୟ ପୋତ,
ପାଲ ଟାଣି କରେ ଯାତ୍ରା ଦରିଆ ସେପାରେ
ବିଦେଶେ ବଣିଜ କରି ଫେରେ ଆନନ୍ଦରେ
ଧରି ତହୁଁ ବିପୁଳ ସମ୍ପତ୍ତି,
ସାଧବାଣୀ ବନ୍ଦାଇ ନିଅନ୍ତି ।

ସେ ଦିନେ ଉତ୍କର୍ଷ ଥିଲା କଳା ସଂସ୍କୃତିରେ
ବାଢ଼ିଲା ଭାସ୍କର୍ଯ୍ୟକଳା ମନ୍ଦିର ଗାତ୍ରରେ,
ମୋହିଲା ବିଶ୍ୱମାନସ ତା'ଶିଳା ନର୍ତ୍ତକୀ
ଆଜିବି ମୋହୁଛି ମନ, ତା' ଗନ୍ଧର୍ବ ଶିଳ୍ପୀ,
ମନୋମୟ କାରୁ ଚାରୁ କଳା
'ପଦ୍ମ'ରେ ଫୁଟାଏ ତା'ର
ଶୋଭା ସ୍ନିଗ୍ଧ ସହସ୍ର ପାଖୁଡ଼ା ।

ଓଡ଼ିଆ ଅଟଇ ଏକ ସ୍ୱାଭିମାନୀ ଜାତି
ସ୍ୱାଧୀନତା ଅଟେ ତା'ର ପରମ ବିଭୂତି,
ପ୍ରାଚୀନ ଓଡ଼ିଶା ତା'ର କୀର୍ତ୍ତି ଗାଥା ଗାଏ
ଗଙ୍ଗାଠାରୁ ଥିଲା ବ୍ୟାପ୍ତ ସେତୁବନ୍ଧ ଯାଏ,
ଥିଲା ଦିନେ ସେ ଦୁର୍ଗମାଳିନୀ
ଅରାତିର ଭୀତି ପ୍ରଦାୟିନୀ ।

ଅସ୍ତମିତ ଆଜି ତା'ର ସେ ସୌଭାଗ୍ୟ ରବି
ହଜି ଯାଇଅଛି ତା'ର ଯଶର ସୁରଭି
ଆସିଲେ ପଠାଣ ମାଡ଼ି, ମୋଗଲ, ମରାଠା
ଶୋଷିଲେ ଓଡ଼ିଶା ରକ୍ତ କରିଦେଲେ ଶିଠା
ଶେଷେ ଆସି ବଣିକ ଇଂରେଜ
ଦଖଲକୁ ନେଇ ଗଲେ ଏ' ସ୍ୱାଧୀନ ରାଜ୍ୟ ।

ଆସିଲା ଦୁର୍ଦ୍ଦଶା ମାଡ଼ି ସର୍ବେ ହୀନବଳ
ଚୂର୍ଣ୍ଣୀଭୂତ ହେଲା ତା'ର ଜାତୀୟ ସମ୍ବଳ,
ଲୋପ ହେଲା କଳାକୃତି ସଂସ୍କାର ସଂସ୍କୃତି
କୃଷି, ବାଣିଜ୍ୟ, ସାହିତ୍ୟ, ଧର୍ମ ଅଧୋଗତି
ପ୍ରଜାଗଣ ଶଙ୍କିତ ସନ୍ତ୍ରାସେ,
ହେଲା ଉତ୍କଳ ଜନନୀ ଅଙ୍ଗଭଙ୍ଗ ଶେଷେ ।

ତା' ମଧ୍ୟେ ରହିଛି ବଞ୍ଚି ଏ' ଓଡ଼ିଆ ଜାତି
ଓଡ଼ିଆ ଭାଷା ସାହିତ୍ୟ ଲଭିଛି ସ୍ୱୀକୃତି,
ପ୍ରାଚୀନ ଭାଷା ଭଣ୍ଡାରେ ରଖିଛି ତା' ଟେକ
ଉନ୍ନିବୀତ ଅଟେ ତା'ର ଅଲିଭା ସନ୍ତକ
ଏତେ ଅଘଟଣ ସତ୍ତ୍ୱେ,
ଅତୁଟ ରହିଛି ତା'ର ଅସ୍ତିତ୍ୱ ଜଗତେ ।

•

୮୦

# ବଦଳାଅ ଗତି ପଥ

ଆବଶ୍ୟକ ପଡ଼ିଲେ ଜୀବନେ,
ବଦଳାଅ ଗତିପଥ
ଚଳାଅ ସେ ଦିଗେ ରଥ
ତା'ହେଲେ ପହଞ୍ଚି ଯିବ
    ତୁମ ଲକ୍ଷ୍ୟ ସ୍ଥଳେ,
ବିଭୋରିତ ଲଗନରେ
    ଆନନ୍ଦେ ବିହ୍ୱଳେ ।

ମିଳିଯିବେ ପଥେ ତୁମ
    ସହ ଯାତ୍ରୀ ଦଳ
ସେ ପୁଣି ବଦଳାଇବେ
    ନିଜ ଲକ୍ଷ୍ୟ ସ୍ଥଳ,
    ଆବଶ୍ୟକ ହେଲେ
ଶତ୍ରୁ ପୁଣି ମିତ୍ର ହେବେ
ମିତ୍ର ପୁଣି ଆଚରିବେ
    ଶତ ଶତ୍ରୁ ତୁଲେ ।

ଏଇପରି ଭେଟଭାଟ ଚାଲିଥିବ ସଦା
ଚଟୁଳ ଚାଟୁ ବଚନେ ଶମୁଥିବ ବଧା,
ଲୋଡ଼ା ନାହିଁ ପରିଚୟ ମାନ ସନମାନ
ଶ୍ରଦ୍ଧାମୟ ଇଲାକାରେ ସମସ୍ତେ ସମାନ,
    ଶୁଭେ ତହିଁ ଶୁଭ ଶଙ୍ଖ ଧ୍ୱନି
ପ୍ରେମ ଆଉ ପ୍ରତ୍ୟୟର ବାଣୀ ।
    ନୂତନ ଭାବନା
ଗତି ପଥ ବଦଳାଏ ନବୀନ ପ୍ରେରଣା ।

ଶୁଣ ଶୁଣ ଭାଇ !
ଶୁଣ ମନ ଦେଇ
ସମସ୍ତେ ଗାଆନ୍ତି ଗୀତ
ଏ' ସଂସାର ଗୀତିମୟ ନଇ ।
ଏ ଭୂମିର ଚର ଓ ଅଚର
ଜୀବ ଜନ୍ତୁ ଉଭିଦ ସକଳ,
ଗଛ ଲତା, ପଶୁ ପକ୍ଷୀ ବନ ଉପବନ
ସୂର୍ଯ୍ୟ ଚନ୍ଦ୍ର ତାରା ନଭ ପାଣି ଓ ପବନ
ନିଖିଳ ଜଗତ,
ସବୁଠି ମୂର୍ଚ୍ଛିତ, ଭୂମି ଭୂମାର ସଙ୍ଗୀତ ।

ସେ ସଙ୍ଗୀତେ ଯୋଗଦିଅ ଭାଇ
ବଦଳାଅ ଗତି ପଥ
ଏ ଜୀବନ ଉତରଣ ପାଇଁ,
ରହିଗଲେ ସ୍ଥିର ହୋଇ ଥରେ
ରହିଯିବ ଚିରଦିନ
ଯେଉଁଠାରେ ଥିଲ ସେଇଠାରେ ।।



୮୧

# ବରଦାନ

ସେ ମହାରାଜା କୀର୍ତ୍ତି ଦୀର୍ଘ ଅତୀତ
ଯା'ର ଶ୍ରାଦ୍ଧ ପାଳନ୍ତି ଜଗତ ନାଥ,
ଏପରି ଭାଗ୍ୟବାନ କେ ଅଛି ଭବେ
ଅତୀତ ହସୁଥିଲା କି ଗଉରବେ !
ତା'ର ତୁଳନା ନାହିଁ,
ଆନନ୍ଦ ପାଉ ଆମେ, ଅତୀତେ ଚାହିଁ ।

ପରମ ବିଷ୍ଣୁଭକ୍ତ ସେ ଇନ୍ଦ୍ରଦ୍ୟୁମ୍ନ
ସେ ମହା ରାଜାଥିଲେ ମହାମହିମ,
ରାଣୀ ତାଙ୍କର ଥିଲେ ଗୁଣ୍ଡିଚା ଦେବୀ
ସେଥିଲେ ପୁଣ୍ୟବତୀ ଅତି ମାନବୀ
ନିର୍ମାଣିଲେ ମନ୍ଦିର,
ଶ୍ରୀଜୀଉଙ୍କର ଅଟେ, ତା' ଷଠିଘର
ଭାସି ଆସିଲା ଦାରୁବ୍ରହ୍ମ ସାଗରେ
ଶୁଣିଲେ ରାଜା ବ୍ରହ୍ମବାଣୀ ସତ୍ୱରେ,
ରାଜ ପୁରୋଧା ସହ ଗଲେ ସେ ତହିଁ
ଦାରୁ ସଂଗ୍ରହ କରି ଆସିଲେ ନେଇ,
ଦାରୁବ୍ରହ୍ମ ମୂରତି,
ନିର୍ମାଣ କଲେ ବିଶ୍ୱକର୍ମା ସ୍ଥପତି ।

ଶ୍ରୀମନ୍ଦିର ଶ୍ରୀକ୍ଷେତ୍ରେ ହେଲା ନିର୍ମିତ
କଳା ଭାସ୍କର୍ଯ୍ୟେ ଶୋଭା ପାଇଲା ଗାତ୍ର,
ଏପରି ହେଲା ତାହା ଶୋଭା ଭଣ୍ଡାର
ଆଜିବି ନେତ୍ର ଲୋଭା ସାରା ବିଶ୍ୱର
କଳା ବିଭବେ ଭରା,
କାଳ ଜୟୀ ଅଟେ ତା' ଶୋଭା ପସରା ।

ମନ୍ଦିର, ଦେବମୂର୍ତ୍ତି, ପ୍ରତିଷ୍ଠା ପାଇଁ
ଆସିଲେ ସ୍ୱୟଂ ବ୍ରହ୍ମା ମର୍ତ୍ତ୍ୟେ ଓହ୍ଲାଇ
ଦେବ ଗନ୍ଧର୍ବ ଗଣ ହୋଇଲେ ଉଭା
ସତେବା ମର୍ତ୍ତ୍ୟ କ୍ଷେତ୍ରେ ଏ ଦେବ ସଭା
ଘୃତ ଆହୁତି ଯାଗ,
ଲଭିବେ ଦେବଗଣ ଏ' ଯଜ୍ଞ ଭାଗ ।

ଯଜ୍ଞ ଶେଷରେ ବ୍ରହ୍ମା ସନ୍ତୋଷ ଭରେ
ଦେଲେ ସେ ଆଶୀର୍ବାଦ ଦେବଙ୍କ ମେଳେ,
କି ବର ମାଗୁଅଛ ମାଗ ରାଜନ
ତୁମେ ମହା ମହିମ ହେ କୀର୍ତ୍ତି ମାନ୍ ।'
ଦେବି ଆନନ୍ଦ ମନେ
ନାମ ରହିବ ତୁମ ବିଶ୍ୱ ଭୁବନେ ।

"ସନ୍ତୁଷ୍ଟ ଯଦି ପ୍ରଭୁ ! ମାଗେ ଏ'ବର
ମୋ ବଂଶେ କେହି ନ ରହନ୍ତୁ ନିଜର,
କହିବେ ବୋଲି ଏହି ମନ୍ଦିର ଆମ,
ପ୍ରକାଶିବାକୁ ତାଙ୍କ ବଡ଼ିମା ଢମ ।"

'ତଥାସ୍ତୁ' କହି
ବାହୁଡ଼ିଗଲେ ପ୍ରଭୁ, ଦେବଙ୍କୁ ନେଇ ।
ଇନ୍ଦ୍ରଦ୍ୟୁମ୍ନଙ୍କ ବଂଶ
ସେ ବର ଲଭି ତହୁଁ ହୋଇଲା ଶେଷ ।

ଏତେ ତ୍ୟାଗ ଦୃଷ୍ଟାନ୍ତ ବିରଳ ଭବେ
ଏପରି ବ୍ୟକ୍ତି ଜନ୍ମି ନାହାନ୍ତି କେବେ,
ଶ୍ରାଦ୍ଧ ତର୍ପଣ ତାଙ୍କ ପାଳିବା ପାଇଁ
ସେ ମହାବଂଶେ କେହି ଜଣେବି ନାହିଁ,
ତାହା ପାଳନ୍ତି ପ୍ରଭୁ,
ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରେ ପୂରବୁ ।

ଇତିହାସର ମୂକସାକ୍ଷୀ ଏ ନୀତି
ଏଥିପାଇଁ ମହାନ୍ ଏ ମହା ଜାତି,
ତା' ମହାପ୍ରଭୁ ମହା ଜଗତ ନାଥ
'ମହାବିଭବ' ତା'ର ମନ୍ଦିର ଏତ ।
ଏହାକୁ ପାଇ,
ଓଡ଼ିଆ ଜାତି ଅଛି....ଓଡ଼ିଆ ହୋଇ ।

•

୮୨

# ଲାଲବାହାଦୁର ଲାଲ୍‌ମନୀ

ପିଲାଦିନେ ଥିଲା ଝିଅଟିର ନାମ 'ଲାଲମନୀ'
ମଧୁରିଆ ହସ ତା' ଚାଲି ଚଳଣି
ସମସ୍ତଙ୍କ ମନ ନିଏ କିଣି ।
ଲାଲମନୀ ସେତ ଲାଲମନୀ ।
ବାପାଙ୍କର ସିଏ ଗେହ୍ଲା ଝିଅ,
ଭାରି ସେବାଶୀଳା, କରମ କୁଶଳା
ଦାନ ଖାଇରାତେ ଭାରି ପ୍ରିୟ ।

ବାପା ନେଇ ତା'ର ନାମ ଲେଖାଇଲେ ଚାହାଳିରେ
ଆନନ୍ଦ ମନରେ ପାଠ ସେ ପଢ଼ିଲା
ଛୋଟ ଛୋଟ ପିଲା ଗହଳିରେ ।
ହଠାତ୍ ତାହାର ବାପା ଚାଲିଗଲେ ଆରପାରି
ପାଠପଢ଼ା ତା'ର ବନ୍ଦ ହୋଇଗଲା ଥପ୍ କରି,
ଝିଅ ବୋଲି ।
ସମସ୍ତେ ଭାବିଲେ
"ଶୁଭ ନୁହେଁ ପରା ଝିଅ ପଢ଼ିବାଟା -
ପୁଅ ପରି ।"

ଯେତେ ବୁଝାଇଲେ, ଝିଅମନ ଆଦୌ ବୁଝିଲାନି
ଆପେ ଆପେ ଘରେ ସେ ପାଠ ପଢ଼ିଲା ଅଭିମାନୀ
ନପଚାରେ କିଏ ନପଚାରେ
ଆକସ୍ମିକ ଦିନେ, ଡୋର ବନ୍ଧା ହେଲା ବସ୍ତାନିରେ ।

ବଡ଼ ହୋଇଗଲା ଲାଲମନୀ
ସୁନ୍ଦର ରୂପଗୁଣ ନିଏ ସବୁ ମନ କିଣି ।
ଦୁଲାରୀ ନାନୀଙ୍କ ଭାରିନାଁ
ଲୋକସେବା ନିତି କରନ୍ତି ଖୁସିରେ
ବୁଲି ବୁଲି ସିଏ ଗାଁ...ଗାଁ ।
ଲାଲମନୀକୁ ଦେଖିଲା ଦିନରୁ
ଆଖେଇ ଥିଲେ ସେ ବୋହୂ ପାଇଁ
ସେ ଯିବ ଘରକୁ ବୋହୂ ହୋଇ ।
ପ୍ରସ୍ତାବ ତାଙ୍କ ନେଲା ରୂପ
ବିବାହ ହୋଇଲା ଲାଲ ବାହାଦୁର ସାଥେ ତାଙ୍କ ।
ଲାଲ ବାହାଦୁର ଲାଲମନୀ
ଜଣେ ରଜା ଆଉ ଜଣେ ରାଣୀ ।
ଦୁଲାରୀ ନାନୀଙ୍କ ମନ ଖୁସି
ମହା ଆନନ୍ଦେ ଗଡ଼ିଗଲେ ସିଏ ହସି ହସି ।

ତିଥିବାର ସବୁ ହେଲା ଥିର
ବାହାଘର ଦିନ ଆନନ୍ଦେ ଉଛୁଳେ ଦି'ଘର,
ବର, ବରଯାତ୍ରୀ, ପହଞ୍ଚିଲେ
ବିବାହ ବେଦିରେ ବେଦିକାମ ବିଧିମତେ ଚାଲେ ।
ମନ୍ତ୍ର ପଢ଼ନ୍ତି ପୁରୋହିତ,
ହାତଗଣ୍ଠି ବେଳେ ବର ନବଢ଼ାନ୍ତି ନିଜହାତ ।
କହିଲେ, "ଶପଥ ମନ୍ତ୍ର ପଢ଼ିବୁ ଆମେ ଏଥି
ଅଗ୍ନିଦେବଙ୍କୁ ସାକ୍ଷୀ ରଖି ହେବୁ ଜାୟା ପତି ।
ହେବ ନାହିଁ ଏହା ବ୍ୟତିକ୍ରମ
ଭାବନି ଏ ମୋର ମତିଭ୍ରମ ।

କ'ଣ ଭାବିଲେ ଯେତେ ଗୁରୁଜନ ଥିଲେ ତହିଁ,
ଉଠିଗଲେ ତହୁଁ ବିନା ପ୍ରତିବାଦେ
ମଉନରେ ଜଣ ଜଣ ହୋଇ
କୁଳ ପୁରୋହିତ ଆଦେଶିଲେ
ଉଦାତ୍ତ କଣ୍ଠେ ବରବଧୂ ଦୁହେଁ
ଶପଥ ମନ୍ତ୍ର ପାଠକଲେ ।
ହାତଗଣ୍ଠି ଏବେ ପଡ଼ିଗଲା
ଗଳାରେ ବରଣମାଳା ଦୁହିଁଙ୍କର ଲମ୍ବିଗଲା,
ଦୁହେଁ ହୋଇଗଲେ 'ଜାୟା ଆଉ ପତି' ଚିରଦିନ
ଲାଲମନୀ ଲାଲ୍‌ବାହାଦୁରଙ୍କର, ଲାଲ୍‌ମନ ।
ଭାରତର ହେଲେ ପ୍ରଧାନମନ୍ତ୍ରୀ
ମହାମାନ୍ୟ ଲାଲ ବାହାଦୁର
କେତେ ତଳୁ ଉଠି ଉପରେ ବସିଲେ
ଉଦ୍ୟମ ବଳେ ଦୃଢ଼ତାର;
ତାଙ୍କ ପ୍ରେରଣାର ଉତ୍ସ ଲାଲମନୀ
ସର୍ବ ଶୁଭର ସୁରଧୁନୀ ।

•

ବିନ୍ଦୁ : ଲାଲ ବାହାଦୁରଙ୍କ ବୈବାହିକ ଜୀବନର ଝଲକ

୮୩

# ଆଜାଦ୍

ବଙ୍ଗଳା ଦେଶର ହେଲା ନବଜନ୍ମ
'ପୂର୍ବ ପାକିସ୍ଥାନ' ଥିଲା ତା' ଆଗେ,
ଇତିହାସର ଏ' ବିଶେଷ ଘଟଣା
ଘଟିଛି ଭାରତ ପୂର୍ବ ଭାଗେ ।

ବଙ୍ଗଳା ଭାରତ ସୀମା ନିରୂପିତ
ବିବାଦୀୟ କିଛି ରହିଲା ତହିଁ,
ଏପାଖ ସେପାଖ କିଛି ଗ୍ରାମପୁଞ୍ଜ
କେଉଁ ଦେଶର ସେ ହୋଇଲେ ନାହିଁ ।
ପରିଚୟ ହୀନ ହୋଇଲେ ସିଏ
ବର୍ଷ ବର୍ଷ ବିତେ କାଳର ସୁଏ ।

ବଞ୍ଚିତ ହେଲେ ଲୋକମାନେ ତହିଁ
ସବୁ ସୁବିଧାରୁ ରହିଲେ ଦୂରେ
ତଥାପି ଭାରତ ସୀମା ପାଖ ଗାଁ
ଥିଲେ ତାଙ୍କଠାରୁ ଆନନ୍ଦରେ ।
ମିଳିଯାଏ ସବୁ ଯା' ଆବଶ୍ୟକ
ପୂରଣ ହୁଏ ତା' ନଥାଏ ଦକ ।

ବହୁ ବର୍ଷ ପରେ ଦୁଇଦେଶ ମନ କରିଲେ ଥିର
ସୀମା ବିବାଦକୁ ତୁଟାଇଲେ ସିଏ
ଅଚଳ ଅବସ୍ଥା ହୋଇଲା ଦୂର ।

ଅଦଳ ବଦଳ ହୋଇଲା ଗାଁ
ଏ ପାଖରୁ ଗଲା, ସେ ପାଖୁ ଆସିଲା,
ନୂଆ ପରିଚୟ ଦେଖାଇଲା ତାଙ୍କୁ
ନୂତନ ରାହା ।

ଏତେ ଦିନ ପରେ ପୂର୍ଣ୍ଣ ସ୍ୱାଧୀନତା
ମିଳିଲା ତାଙ୍କୁ,
କିଛି ଅସୁବିଧା ରହିଲାନି ତାଙ୍କ
ନୂଆ ପରିଚୟେ ସେ ଚଳିବାକୁ ।
ନୂଆ ଜାତୀୟତା ଲାଭ କରି ସିଏ
ହୋଇଲେ ଖୁସି
ଏମାନେ କହିଲେ ଆମେ 'ଭାରତୀୟ'
ସେମାନେ କହିଲେ 'ବଙ୍ଗ ବାସୀ !

ଏ' ମହା ମୁହୂର୍ତ୍ତେ, ଏ' ଶୁଭବେଳେ
ନବ ବଧୂ ଏକ ସନ୍ତାନଟିଏ ଜନ୍ମଦେଲେ,
ସ୍ୱାଧୀନତା ଲାଭ ମୁହୂର୍ତ୍ତରେ
ଶିଶୁ ଜନ୍ମ ବୋଲି
'ଆଜାଦ' ତାହାର ନାମଟି ରଖିଲେ
ଖେଳିଲେ ସରବେ ଆନନ୍ଦ ହୋଲି ।
ସ୍ମରଣୀୟ ହୋଇ ରହିଲା ତାହା,
ଏ ମହାଘଟଣା....ଘଟଣା ମହା ।

•

ବି.ଦ୍ର. : ଭାରତ ଓ ବଙ୍ଗଳା ଦେଶର ସହମତିରେ, ସୀମାରେଖାର ଅନ୍ତିମ ନିର୍ଣ୍ଣୟ ବେଳର ଏକ ସତ୍ୟ ଘଟଣା ଉପରେ ଆଧାରିତ ।

୮୪

# ନୀଳ ଲୋହିତ

ମଙ୍ଗଳମୟ ପ୍ରଭୁ
ହେ ଶିବ ମହାବାହୁ
ତୁମେ ତ ମହାଦେବ ସୁରେଶ,
ତୁମେ ଜୀବନ ଧାରା
ସର୍ବ ଶୁଭ ପସରା
ହେ ମହାଦେବ ଶିବ ଦେବେଶ ।
ତୁମ ଚରଣ ବନ୍ଦେ ଭକ୍ତିରେ,
ସର୍ବେ ବିଲୀନ ତୁମ ଶକ୍ତିରେ ।

ତୁମ ଭିତରେ ବ୍ୟାପ୍ତ
ମହାକାଶ ଅନନ୍ତ
ପବିତ୍ର ପ୍ରଶାନ୍ତିମା ନୀଳିମା,
ସକଳ ଦୁଃଖ ହର
ହେ ପ୍ରଭୁ ହରିହର
କର ଦୁରିତ ଦୂର କାଳିମା ।
ହେ ମହାସତ୍ତା; ମହିଭୂଷଣ
ମହା ଆନନ୍ଦ ଧାରା, କର ବର୍ଷଣ ।

ସର୍ବ ଜୀବନାଧାର
ହେ ପ୍ରଭୁ ଦିବାକର
ଭରିଛ ପ୍ରାଣପାତ୍ର ସକଳ,

ସେ ଲୋହିତ ଲାଲିମା
ପ୍ରାଣ ସତ୍ତା ଅଣିମା
ଚିର ନୂତନ, ଚିର ସଚଳ ।

ନଥାଏ କେବେ ତା'ର ବିରତି
ବିଶ୍ୱମୋହନ ମାହା ମୂରତି ।
ମହେଶ ଆହେ ଶିବ ଶଙ୍କର
ଜୀବନାନନ୍ଦ ମହାସାଗର,
ସାର୍ଥକ କରିଅଛ ସେ'ନାମ
'ନୀଳ ଲୋହିତ' ନାମ ପରମ ।
ହେ ସଦାନନ୍ଦ କରେ ଗୁହାରି
ଏ ପ୍ରାଣ ଯାଉ ନାମ ସୁମରି ।

●

୮୫

# ମହା ମୁହୂର୍ତ୍ତ

ଇତିହାସର ଏ' ମହାନ ମୁହୂର୍ତ୍ତ
ଘଟି ଅଛି ଯାହା ନ ଘଟେ,
ଅସମ୍ଭବ ପୁଣି ସମ୍ଭବ ହୋଇଛି
ଅପ୍ରକଟ ଯାହା ପ୍ରକଟେ ।
ଏ' ମହାରହସ୍ୟ ଧାରାକୁ
କେ ଲଂଘି ପାରିବ ତାହାକୁ ।

ସୁଦୂର ବିଲାତୁ ଛୁଟି ଆସିଥିଲା
'ଇଷ୍ଟ ଇଣ୍ଡିଆ କମ୍ପାନି'
ଭାରତ ଭୂମିରେ ବେପାର କରିବ
କଲା କଉଶଳେ ବଇନି -
ହାତକରି ଏଠି ଶାସନ,
ଜାଗାଟିଏ ପାଇ ଦୃଢ଼ କଲା ତା'ର ଆସନ ।

ସେ ଭାବିଲା ମନେ, ଭାରତ ହେଉଛି
ସୁନାଅଣ୍ଡା ଦିଆ ଚଢ଼େଇ
ତାକୁ କରିଦେଲେ ପଞ୍ଜୁରୀ ବନ୍ଧ
ବଢ଼ିଯିବ ତା'ର ବଡ଼େଇ
ହାତ, ପଶୁ ପଶୁ ବାହା ପଶିଲା,
ଏଇ ଭାରତର ଶାସନ କ୍ଷମତା
କବଳକୁ ତା'ର ଆସିଲା ।

ବେପାର କରିବା  ପାଇଁ ଆସିଥିଲା
 କରିଲା ଏଠାରେ ରାଜୁତି,
ଦୀର୍ଘ ଶହେ ବର୍ଷ ଶାସନ କରିଲା
 ବଢ଼ିଲା ବେଉସା ସମ୍ପତ୍ତି ।
 ବିଲାତଶାସନ ହାତକୁ,
 ଦେଲା ସେ ଭାରତବର୍ଷକୁ ।

ସେମାନେ ଶାସିଲେ ପୁଣି ଶହେ ବର୍ଷ
 ଶୋଷିଲେ ଭାରତ ରକତ,
ଦୁଇଶହ ବର୍ଷ ଶାସନ କାଳରେ
 କରିଦେଲେ ତଳି ତଳାନ୍ତ,
ଏ' ଭାରତବାସୀ ଜାଗିଲେ
ମୁକ୍ତି ସଂଗ୍ରାମେ ଝାସିଲେ ।

ଅହିଂସ ଥିଲା ତା'ର ଆନ୍ଦୋଳନ
 ସଂଗ୍ରାମ ଥିଲା ମୁକ୍ତିପାଇଁ,
ସ୍ୱାଧୀନତା ତା'ର ହକ୍ ଅଧିକାର
 ବିଦେଶୀ ଛଡ଼ାଇ ପାରିବେ ନାହିଁ ।
ଡାକ ଦେଲେ ଗାନ୍ଧୀ କର ବା ମର,
ମିଳିବ ହାତକୁ ଶାସନର ଡ଼ୋର
 ସଂଗ୍ରାମ କର ହେ, ସଂଗ୍ରାମ କର ।

ଗାନ୍ଧୀ ଶିଖାଇଲେ ମଣିଷ ଜାତିକୁ
 ଶତ୍ରୁକୁ ମଧ କରହେ ପ୍ରେମ,
ଅଣୁ ଶକ୍ତିଠାରୁ ଅଟେ ଶକ୍ତିଶାଳୀ
 ସତ୍ୟ ଓ ପ୍ରେମ ଅହିଂସା ରଣ ।
ଏଦେଶ ବାସୀଙ୍କୁ ଜାଗ୍ରତ କଲା 'ମନ୍ତ୍ରଧ୍ୱନି'
ବିଦେଶୀ ଶାସନ ହେଲା ଅବସାନ
 ସ୍ୱାଧୀନ ହୋଇଲା ଭାରତ ପୁଣି ।

ଇତିହାସ ଧାରା ବଦଳି ଯାଇଛି
ଅଭାବିତ କଥା ଘଟିଛି ଏବେ
'ସଞ୍ଜିବ ମେହେଟା' ଉଦ୍ୟୋଗପତି
ରଖିଛନ୍ତି ନୂଆ କୀରତି ଭବେ
ଅବସ୍ଥା ହୋଇଲା କି ଦୟନୀୟ
ଇଷ୍ଟ ଇଣ୍ଡିଆ କମ୍ପାନି ମାଲିକ -
ହୋଇ ପାରିଛନ୍ତି ଏ' ଭାରତୀୟ ।

•

ବି.ଦ୍ର. ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଶ୍ରୀ ୧୭୫୭ - ୧୮୫୮ ।
ବ୍ରିଟିଶ ସରକାର ଶ୍ରୀ ୧୮୫୮ - ୧୯୪୭ ପର୍ଯ୍ୟନ୍ତ ଭାରତକୁ ଶାସନ କରିଥିଲେ । ତା୨୭.୮.୨୦୧୫ରେ ଜଣେ ଭାରତୀୟ ଉଦ୍ୟୋଗପତି 'ସଞ୍ଜିବ ମେହେଟା', ସେଇ ଇଷ୍ଟ୍‌ଇଣ୍ଡିଆ କମ୍ପାନିକୁ କିଣି ଆଜି ତାଙ୍କ ଅଧୀନକୁ ଆଣିଛନ୍ତି ।

ତା୨୭.୮.୨୦୧୫
ସମାଜ

୮୬

# ରାହୁଲ

ମନେ ପଡ଼େ ଅତୀତର ସ୍ମୃତି
ଇତିହାସ ପାଲଟିଛି ସ୍ମରଣୀୟ ସ୍ମୃତିର କୀରତି ।
ହିମାଳୟ ପାଦଦେଶେ
ଥିଲା ଏକ ପାହାଡ଼ି ରାଇଜ
ନାମ ତା' କପିଳବାସ୍ତୁ
ଥିଲେ ରାଜା ଶୁଦ୍ଧୋଦନ ରାଜ,
ପାଳୁଥିଲେ ପ୍ରଜାଙ୍କୁ ଶାନ୍ତିରେ
କୀର୍ତ୍ତି ରଖିଥିଲେ ସିଏ ଏ ମର୍ତ୍ତ୍ୟ ମହିରେ ।

ଅତ୍ୟନ୍ତ ମମତାମୟୀ ମହାରାଣୀ 'ମାୟା'
ଥିଲେ ରାଜା ପାଖେ ପାଖେ
ସତେ ଯେହ୍ନେ ଛାୟା ।
ଦିନେ ନିଶିଥ ସପନେ ଦେଖିଲେ ରାଣୀମା'
ପ୍ରଭୁଙ୍କର ଇଏ କି ମହିମା !
ଶ୍ୱେତ ପଦ୍ମଟିଏ ଧରି ଶ୍ୱେତ ହସ୍ତୀ ଏକ
ଗର୍ଭରେ ପ୍ରବେଶ କରେ
କି ଶୁଭ ସନ୍ତକ,
ଦେହ ତାଙ୍କ ଉଠିଲା ଶିହରି
କରିଲା ରୋମାଞ୍ଚ ସୃଷ୍ଟି
ସ୍ୱପ୍ନମୟୀ ସସ୍ମିତା ସୁନ୍ଦରୀ ।

ମାସ ଦଶ ହେଲା ଅତିକ୍ରମ
ଜନ୍ମ ଦେଲେ ମହାରାଣୀ ଶିଶୁ ଅନୁପମ ।
ପ୍ରଶାନ୍ତ ନୟନ ମୁଖ ଦିବ୍ୟ ଜ୍ୟୋତିଭରା
ଏ' ମର୍ତ୍ତ୍ୟରେ ଅବତୀର୍ଣ୍ଣ ଦେବଶିଶୁ ପରା,

ଦୀର୍ଘ ବାହୁଯୁଗ
ପୁଣି ଲମ୍ବିତ ଶ୍ରବଣ,
ପାଦେ ପଦ୍ମ ରେଖାଙ୍କିତ ସେ ବିଶ୍ୱମୋହନ ।
'ସିଦ୍ଧାର୍ଥ ଗୌତମ' ନାମ
ଦେଲେ ସେ' ଶିଶୁକୁ
ଆସିଛନ୍ତି ଦେବଦୂତ
କପିଳବାସ୍ତୁକୁ,
ଶୁଦ୍ଧୋଦନ ଆନନ୍ଦେ ବିହ୍ୱଳ
ଚେତନାରେ ମୁକୁଳିତ ଆଲୋକ ମୁକୁଳ ।

ବିଧିର ବିଧାନ ଥିଲା ଅତି ନିରିମମ
ମହାରାଣୀ ମାୟାଦେବୀ ତେଜିଲେ ପରାଣ,
ଶିଶୁଟିକୁ କରି ମାତୃହରା
ଅଦିନରେ ଚାଲିଗଲେ, ଅବେଳରେ ପରା ।

ମାତୃତ୍ୱ କରିଲେ ଦାନ ମାତୃଷ୍ୱସା ଆସି
ଶିଶୁଟିର ନେଲେ ଯତ୍ନ ସଶ୍ରଦ୍ଧେ ଶ୍ରେୟସୀ
ସବୁଜାଭ ହୋଇଲା ଶୈଶବ
ରାଜକୀୟ ବିଳାସ ବୈଭବ ।
ତଥାପି....ତଥାପି
ରାଜପୁତ୍ର ଉଦାସୀନ ବାଲ୍ୟ ବିଭୂତିରେ,
ଲକ୍ଷ୍ୟ କଲେ ମହାରାଜା ଦ୍ରବିତ ଦୁଃଖରେ
ସଦା ଶିଶୁ ନିଃସ୍ପୃହ ଚିନ୍ତିତ
ସଂସାର ବାସ୍ତବ ଚିତ୍ର ଦେଖି ମର୍ମାହତ ।
ଯୌବନ ସ୍ପର୍ଶକଲା ସୁକୁମାର ତନୁ
ଯୁବରାଜ ଦିଶୁଛନ୍ତି ସତେ ଇନ୍ଦ୍ରଧନୁ,
ତଥାପି ବିଷାଦ ଛାୟା ଲିଭୁନି ମନରୁ
'ଯୁବରାଜ ହେବେ ଦିନେ ବାଞ୍ଛା କଳ୍ପତରୁ'
ଭାବିଥିଲେ ରାଜା ଓ ପରଜା,
ବୈରାଗ୍ୟ ଡାକୁଛି ତାଙ୍କୁ ଘେନିବେ ପ୍ରବ୍ରଜ୍ୟା ।

ବିଚାରିଲେ ରାଜା ଶୁଦ୍ଧୋଦନ
ବିବାହ ବନ୍ଧନେ ତାଙ୍କୁ କରିବେ ବନ୍ଧନ,
ଅପୂର୍ବ ଲାବଣ୍ୟମୟୀ ସେ ରାଜକୁମାରୀ
ନାମ ତାଙ୍କ "ଯଶୋଧାରା" ସତେ ସ୍ୱର୍ଗ ପରୀ,
ହେଲେ ରାଜବଧୂ
ପରଷିଲେ ରିକ୍ତ ମନେ ମମତାର ମଧୁ ।

ଅନାସକ୍ତ ମନେଭରି ଆସକ୍ତିର ସୁରା
କରିଲେ ସଂସାରମୁଖୀ,
ସୁର ଦେଲେ, ଯେ ବଂଶୀ ବେସୁରା ।
ଫୁଟିଲା ପ୍ରଣୟବନେ ପ୍ରୀତି ପାରିଜାତ
ଅନାସକ୍ତି, ଛାୟାମେଘେ ହେଲା ପରିଣତ ।
ଆନନ୍ଦରେ ରାଜପୁରୀ ଉଠିଲା ଉଚ୍ଛୁଳି
ବାଜେ, ଘନ ଘନ ଶୁଭଶଙ୍ଖ ହୁଳହୁଳି,
ସେ ଆନନ୍ଦ ଅନିର୍ବଚନୀୟ
ସତେ ଅବା ଅମାର ଅମୀୟ ।

ପୁଲକେ ପଲକେ ପାତି ସିଦ୍ଧାର୍ଥ ଗୌତମ
କହିଲେ ଗୋ ଯଶୋଧାରା ! ଏ ଚନ୍ଦ୍ରମା ତୁମ,
ଦୂର କରିଦେବ ସବୁ ଦୁଃଖ ଅନ୍ଧକାର
ନାମ ତା'ର ରଖିବା 'ରାହୁଳ'
ସମ୍ମତ କି ତୁମେ ?
ଲାସ୍ୟମୟୀ ମୁଖେ ଚାହିଁ, ନୟନକୁ
ଆନତିଲେ ଭୂମେ ।

ନାମର ତାତ୍ପର୍ଯ୍ୟ ବୁଝିନାହିଁ ମୁଗ୍ଧମନ
ତାହା ଥିଲା, "ବାଧା ବିଘ୍ନ ଦୁର୍ବାର ବନ୍ଧନ" ।

•

୮୭

# ଧର୍ମ

ନାନା ଧର୍ମେ ନାନା ବର୍ଣ୍ଣେ
ଏ ପୃଥିବୀ ଅଟଇ ବର୍ଣ୍ଣିଳ
ନାନା ଜାତି, ନାନା ଭାଷା
ଶ୍ରୁତିମୟ ଲଳିତ ମଧୁର ।
ଭିନ୍ନତାରେ ଅଭିନ୍ନ ସଂସ୍କୃତି
ମାନବ ସଭ୍ୟତାର ଏ' ଅତୁଟ ସଂହତି ।

ସର୍ବ ଧର୍ମ ଆଚରଣ ହୋଇପାରେ ଭିନ୍ନ
କିନ୍ତୁ ତାଙ୍କ ଉଚ୍ଚାରଣ ଅଟଇ ଅଭିନ୍ନ,
ଅନନ୍ତ କାଳରୁ ଏଇ ମାନବ ଜାତିକୁ
ଯାହା ବାନ୍ଧି ରଖିଅଛି ନିବିଡ଼େ ମନକୁ ।
ଧର୍ମବଶ ଏ ମାନବ ଜାତି,
ଏହା ତା'ର ପ୍ରଜ୍ଞାଶୀଳ ବିବେକ ବିଭୂତି ।

ପୃଥିବୀବାସୀଙ୍କ ଯଦି
ଥାଏ କିଛି ଏକମାତ୍ର ଧର୍ମ
ନିର୍ବିବାଦ, ନିର୍ବିରୋଧ
ଅଟେ ତାହା 'ଧର୍ମ ସନାତନ' ।
ଏହା ଏକ ସର୍ବଧର୍ମ ଅନନ୍ତ ବାରିଧି
ମାନବ ଚିନ୍ତା ଚେତନା ଉତ୍ତରଣ ବେଦି ।

ଧର୍ମ ବିଶ୍ୱାସର ଏହା ବିପୁଳ ଭଣ୍ଡାର
ସର୍ବ ଧର୍ମ ଧାରା ଏଥି ମିଶି ଏକାକାର
ପୁଣି, ହୁଏ ଆବିର୍ଭାବ
ଚିତ୍ତ ମନ୍ଥନରୁ ମିଳେ ଅମୃତ ବିଭବ ।
ମିଳେ ମଧ ବିଷ
ବିରୋଧ ଭାବନାଚୟ ସେ ବିଷ ସଦୃଶ ।
ଆହେ ବିଶ୍ୱବାସୀ ।
ଧର୍ମ ସକଳ ଜାତିର ଅଟେ ସୂର୍ଯ୍ୟ ଶଶି ।
ଧର୍ମ ନାମେ ନକର କନ୍ଦଳ
ହେତୁବାଦୀ ଦଳ ।

•

୮୮

# କନଫ୍ୟୁସିଅସ୍

ଏ' ନୁହେଁ ଅତୀତ କଥିତ କାହାଣୀ
ଅଟଇ ଗ୍ରନ୍ଥିତ ଗାଥା
ଚାଇନା ଭୂଖଣ୍ଡେ କନ୍‌ଫ୍ୟୁସିୟସ୍ ନାମେ
ଥିଲେ ସାଧୁ ମହାରଥା,
ଶିଷ୍ୟ ମଣ୍ଡଳୀ ସାଥେ
ଚାଲିଥିଲେ ବନପଥେ ।

ବିଷାଦ ବିବଶା ରମଣୀଙ୍କୁ ଏକ
ଭେଟିଲେ ଅଗମ୍ୟ ବନେ,
"ଏକାକିନୀ ଏଥି ଛିଡା ହୋଇଅଛ
କୁହ ଆଗୋ କି' କାରଣେ ?"

ଉଦ୍‌ଗତ ଅଶ୍ରୁ ପୋଛି ଦେଇ କରେ
କହିଲା, 'ପ୍ରଭୁ ! ଏ ଥାନେ,
ହରାଇଛି ମୋର ପରାଣ ବନ୍ଧୁଙ୍କୁ
ପ୍ରାଣାଧିକ ମୋ' ସନ୍ତାନେ,
ବାଘର ଆହାର ହୋଇ
ଅପେକ୍ଷା କରିଛି ଖାଦକଙ୍କୁ ମୋର
ସବୁ ଦୁଃଖ ଦୂର ପାଇଁ ।

ଆଶ୍ୱାସିଲେ ସାଧୁ ମଧୁର ବଚନେ
ନିଜ ରାଜ୍ୟେ ନିଜ ପୁରେ
ଫେରିଯାଅ ନାରୀ, ମିଶାଅ ନିଜକୁ
ସାମାଜିକ ଜୀବନରେ
ଭୁଲି ଯିବ ସବୁ ଦୁଃଖ
ପ୍ରଭୁଙ୍କ କୃପାରୁ ଅବଶ୍ୟ ତୁମକୁ
ମିଳିବ ଅମାପ ସୁଖ ।

"ବାଘଠାରୁ ଅଟେ ଅତି ଭୟଙ୍କର
ଅତି ହିଂସ୍ର ଆମ ରାଜା,
ପ୍ରଜାର ରକତ ଶୋଷଣ କରନ୍ତି
ଗ୍ରାସନ୍ତି ତା' ଅସ୍ଥି ମଜ୍ଜା ।
ସେଠାରେ ନାହିଁ ବି ଶାନ୍ତି
ବରଂ ଶ୍ରେୟସ୍କର ଏ ବନ ଜୀବନ
ନାହିଁ ରାଜଭୟ ଭ୍ରାନ୍ତି ।

ସ୍ତବ୍ଧ ଚକିତେ ଚାହିଁଲେ ସନ୍ଥ
ରମଣୀ ମୁଖକୁ ବାରେ,
"ବେଦନାର ବାଣୀ ଫୁଟିଛି ଯେ ତୁମ
ହୃଦୟବୀଣାର ତାରେ
ଏ ମହାସତ୍ୟକୁ ବୁଝିଲେ ଶାସକ
ନ ରହନ୍ତା କା'ର ଦୁଃଖ,
ପ୍ରଜାଏ ଭୋଗନ୍ତେ ଏ ମହିମଣ୍ଡଳେ
ଅମାପ ସ୍ୱର୍ଗ ସୁଖ ।

ତଥାପି ତୁମେ ଗୋ ଫେରିଯାଅ ନିଜପୁରେ
ତୁମ ପଛେ ଅଛି, ସମାଜର ବଳ,
ରାଜ ବଳ ଯାହା ଟାଳେ ।
ଦୁଃଖର ଅଧ୍ୟାୟ, ହୋଇ ଯାଇଅଛି ଶେଷ
ଅପେକ୍ଷା କରିଛି ସୁଖର ସଂସାର
ଦୂର ହେବ ଅବସୋସ ।"
ଫେରିଲେ ରମଣୀ ଘରେ
ବନପଥେ ବଣା ସ୍ୱାମୀ ଓ ସନ୍ତାନ
ଫେରିଛନ୍ତି ନିଜ ପୁରେ ।
ବ୍ୟାଘ୍ର ଭ୍ରମ ହେଲା ଦୂର
ଆବେଗେ ଉଛୁଳି ମହାନ୍ ସାଧୁଙ୍କୁ
ପ୍ରଣମିଲେ ବାର ବାର ।

•

୮୯

# ଭାରତ ମହାନ୍

ମୋ ଦେଶର ଯେତେ ତୁମେ
ହେ ଭାଇ ଭଉଣୀ !
ସାଧୁ ସନ୍ଥ ମୁନି,
ସର୍ବେ ଏକ ମା'ର ସନ୍ତାନ
ଏ ଜନନୀ ଜନ୍ମଭୂମି ଭାରତ ମହାନ୍ ।

ସଭ୍ୟତା ଓ ସଂସ୍କୃତିର ମହାସ୍ରୋତ
ପ୍ରଖରିତ ଅନାଦି କାଳରୁ,
ମହାମାନବର ଦେଶ ଯୁଗ ଯୁଗାନ୍ତରୁ
ଯଶସ୍ୱୀ ମହାନ୍,
ଜନ୍ମିଥିଲେ ଏ ଦେଶରେ, କାଳଜୟୀ
ମହାନ୍ ବିଦ୍ୱାନ ।

ସର୍ବଧର୍ମ ସମନ୍ୱୟ ପୀଠ ଏ' ଭାରତ
ଏ ବିଶ୍ୱକୁ କରିଛି ପ୍ଲାବିତ,
ସନାତନ ଆର୍ଯ୍ୟ ଧର୍ମ ଧାରା
ସବୁ ଧର୍ମ ସଭ୍ୟତାର ମୂଳସୂତ୍ର ପରା ।

ଏ ଭାରତ ଆଦି ପୀଠ ଶଲ୍ୟ ଚିକିତ୍ସାର
ଅଥର୍ବା ମହର୍ଷି ଥିଲେ ତା'ର ସୂତ୍ରଧର,
'ଅଙ୍ଗ ରୋପଣ' ବିଦ୍ୟାରେ
ସେ ଥିଲେ ଅଧିନାୟକ ଏ' ସାରା ବିଶ୍ୱରେ ।

ଭେଷଜ ମୌଳିକ ତତ୍ତ୍ୱ
ଏ' ଭାରତ ଶିଖାଇଲା ଆଗେ,
ବିପୁଳ ତା' ବନୌଷଧି
ବିଜ୍ଞାନର ଅଛି ପୁରୋଭାଗେ
ଋଣୀ ଆଜି ଚିକିତ୍ସା ବିଜ୍ଞାନ,
ଆଗେଇଛି ଆଗକୁ ସେ ତୋଳି ଜୟଗାନ ।

ଏ' ଭାରତ ଗଣିତରେ
ଖୋଲି ଦେଲା ନୂଆ ଏକ ଦିଗ
'ଶୂନ'ଠାରୁ 'ଦଶ' ଯାଏ
ଶିଖାଇଲା ସଂଖ୍ୟାର କୁହୁକ,
ସଂଖ୍ୟା ପୁଣି ହୋଇଲା ଅସଂଖ୍ୟ
ଜ୍ୟାମିତି, ବୀଜଗଣିତ, ଜ୍ଞାନ ଅନ୍ତରୀକ୍ଷ ।

ସଙ୍ଗୀତର 'ସପ୍ତସ୍ୱର' ଛନ୍ଦ, ରାଗ, ବୃତ୍ତ
ମନ୍ତ୍ର ଯନ୍ତ୍ର ତନ୍ତ୍ର ବିଦ୍ୟା, ତା'ର ମୂଳତତ୍ତ୍ୱ
ଏହା ସବୁ ତା' ଋଷି ବଚନ,
ସ୍ତବ୍ଧ ଏ ଜଗତବାସୀ, ଭାରତ ମହାନ୍ ।

ବାଣୀ ଦିଗ୍‌ବଳୟେ ଉଷା, ତା' ସଂସ୍କୃତ ଭାଷା
ବିଶ୍ୱ ଭାଷାର ଜନନୀ ବାଣୀ ମହାଯଶା,
ପ୍ରାଚୀନ ତା' ବେଦ ଚତୁଷ୍ଟୟ
ବିଶ୍ୱ ସାହିତ୍ୟର ଆଦ୍ୟ ଅର୍ଘ୍ୟ ତା' ବିସ୍ମୟ ।

ଭାରତର ଯେତେ ସବୁ ଆଈବୁଢ଼ୀ କଥା, ଉପକଥା
ହିତ ଉପଦେଶଛଳେ ବାଢ଼ୁଥିଲେ ନୀତିଭରା ଗାଥା,
ସାଇତା ସମ୍ପତ୍ତି ଆଜି ବିଶ୍ୱ ସାହିତ୍ୟରେ
ପିଲାଙ୍କୁ ଶିଖାନ୍ତି 'ନୀତିକଥା' ଗପଛଳେ ।

ଭାରତର ଧର୍ମ ଧାରା, ପରମ୍ପରା, ସଂସ୍କୃତି ମହାନ୍
ତା' ଆଦର୍ଶ ପରିବାର, ସାମାଜିକ ସଂହତି ବନ୍ଧନ,
ମୁନି ଋଷି ଦିବ୍ୟ ମହାବାଣୀ
ବିଶ୍ୱ ପାଇଁ ଫିଟାଇଛି ଜ୍ଞାନମୟ ଆଲୋକ ସରଣୀ
ମହାନ୍ ଭାରତ
ମହା ଜ୍ଞାନପୀଠ ।

•

୯୦

# ଆକାଶ ଖୋଜା

ସେମାନେ ସମସ୍ତେ ମିଶି
ଆକାଶକୁ ଖୋଜୁଥିଲେ ଦିନେ
ଆକାଶ କହିଲା ତାଙ୍କୁ,
"ମୁଁ ପରା ରହିଛି ତୁମ ପ୍ରିୟ ଅପଘନେ
ଖଞ୍ଜି ଦେଇ ସୂର୍ଯ୍ୟ ଚନ୍ଦ୍ର ତାରକା ବୀଥିକା,
ଲୋଟାଇ ନୀଳିମା ଘନ
ସ୍ୱର୍ଣ୍ଣ ଜ୍ୟୋତିରେଖା ।

ତୋ' ଜୀବନ ସୂର୍ଯ୍ୟଶିଖା
ହୃଦୟ ଚନ୍ଦ୍ରମା
ତୋର ସ୍ୱପ୍ନ ଅସୁମାର
ତାରା ପାଟଳିମା
ରହିଛନ୍ତେ ତୋ ପିଣ୍ଡ ଆକାଶେ
ବୃଥା କିମ୍ପା ଏଣେ ତେଣେ
ଖୋଜୁତୁ ହତାଶେ ।

ଉତ୍ସାହରେ କର ତୁହି ଆଲୋକିତ
ତୋ' ପ୍ରାଣ ସୂର୍ଯ୍ୟକୁ,
ପ୍ରୀତିର ଚନ୍ଦନ ମାଖି କରତୁହି
ଜ୍ୟୋତ୍ସ୍ନାୟିତ ହୃଦ ଚନ୍ଦ୍ରମାକୁ ।
ଏ' ଜୀବନ ହେବ ଆଲୋକିତ
ଶାନ୍ତିମୟ, ସ୍ନିଗ୍ଧ ପୁଲକିତ,
'ଉତ୍ତାନପାଦ' ତୁ' ପରା ଉର୍ଦ୍ଧ୍ୱ ତୋର ଗତି,
ସେ ଉର୍ଦ୍ଧ୍ୱେ ବେଢ଼ିଛି ତୋର ହୃଦୟ ବାରିଧି
ତହିଁ ହୁଏ ସଂଘଟିତ ଲୀଳା,
ସୂର୍ଯ୍ୟ ଚନ୍ଦ୍ର ତାରକାର ଖେଳା ।"

●

୯୧

# ତାଳପତ୍ର

ଭାବନାହିଁ ମୋତେ ତୁମେ
କ୍ଷୁଦ୍ର ଏକ ତାଳ ପତ୍ର ବୋଲି,
ଦେଖିଛତ ମୋ' ମାଆଙ୍କୁ
କି ଉତ୍ତୁଙ୍ଗ କି ସମ୍ଭ୍ରାନ୍ତ ନାରୀ !
ଶତାଧିକ ବର୍ଷଧରି
ଦର୍ପେ ଦମ୍ଭେ ହୋଇଛନ୍ତି ଛିଡା
କି'ଶକ୍ତ ଶରୀର ତାଙ୍କ
ସତେ ଅବା ବୟସ ବାହୁଡା ।

ଦୁଃଖୀ ଜନ ଜନନୀ ସେ
ଅରପନ୍ତି ଖାଦ୍ୟ ମଧୁରସ
ମୁଣ୍ଡ ଗୁଞ୍ଜିବାକୁ ତାକୁ
ଦେଇଥାନ୍ତି ଆଶ୍ରୟ ଓ ବାସ ।
ଲେଖା ହୁଏ ମୋ ଗାତ୍ରରେ
ନବଜାତ ଜାତକ ଟିପ୍ପଣୀ,
ସାରା ଜୀବନ ମୁଁ ତାକୁ
ରଖେ ସହି କଷଣ ଲେଖନୀ ।

ଓଡ଼ିଆ ଭାଷାର ଲିପି
ଯେତେବେଳେ ନେଲା ତା'ର ରୂପ,
ମୋ ଗାତ୍ରରେ ଅଙ୍କା ହେଲା
ତା'ର ଭବ୍ୟ ନବୀନ ସ୍ୱରୂପ,
ବର୍ଣ୍ଣମାଳା ମୋ ବୁକୁରେ ରଖିଲି ସାଇତି
ଶିଳା ଗାତ୍ର, ଭୂର୍ଜପତ୍ର, ହେଲେ ମୋର ସାଥୀ ।

ହେଲା ବିବର୍ତ୍ତନ,
ବର୍ତ୍ତୁଳ ହୋଇଲା ପୁଣି ଲିପିର ଗଠନ ।
ଓଡ଼ିଆ ଅକ୍ଷର ସବୁ
ପଟାଳିଆ ପୂର୍ବ ରୂପ ତେଜି
ଗୋଲାକାର ହୋଇଗଲେ
ଛିଡା ହେଲେ ନବ ବେଶ ସାଜି ।

ଉଠିଲା ଉକୁଟି ଦେହେ
ଅଭିନବ ସୌନ୍ଦର୍ଯ୍ୟ ସମ୍ଭାର
ମୋ କୋଳରେ ତୋଳିନେଲି
ସତେ ଅବା ଜନନୀ ତାଙ୍କର ।

ମାଟିବଂଶ ଅବଧାନେ
ନୂଆ କରି ଦେଖାଇଲେ ରାହା,
ଲିପି ସୂତ୍ର ଶିଖାଇଲେ
କେନ୍ଦ୍ର କରି ତିନି ରେଖା ନୂଆ
ବୃତ୍ତ, ଅର୍ଦ୍ଧବୃତ୍ତ, ଏକ ସରଳରେଖାରେ,
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଥାପିଲେ ତହିଁରେ
ଶିଖାଇଲେ ଆମ ବର୍ଣ୍ଣମାଳା,
ପୃଥିବୀର ସବୁଭାଷା ଲିପିର ଏ' ଅନ୍ତୁଡ଼ିଶାଳା ।

ହେଲାଣି ଭାଷା ସମୃଦ୍ଧ
ପ୍ରକାଶିତ ଲେଖା ନବ ନବ,
ମୋ' ପୋଥି ପତରେ କିନ୍ତୁ
ରହିଅଛି ବିରଳ ବିଭବ ।

•

୯୨

# ମହାଭୂମି

ଆମେ ଭାରତୀୟ, ଆମେ ଭାରତୀୟ
ଏ' ଭାରତ ମହାଭୂମି,
ମହା ମହିମାରେ ମଣ୍ଡିତ ପରା
ବିଶ୍ୱ ମୁକୁଟ ମଣି ।

ସାଧୁ ସନ୍ଥର ଲୀଳାଭୂମି ଏ'ତ
ଋଷି ଦେବତାର ଦେଶ,
ଯୁଗେ ଯୁଗେ ଏଥି ଅବତାର ପ୍ରଭୁ
ନେଇଥାନ୍ତି ହୋଇ ତୋଷ ।

ସିଂହାସନରୁ ଓହ୍ଲାଇ ଆସନ୍ତି
ଦେବତା, ଭକତ ଡାକେ,
ନିଦାରୁଣ ହେଲେ ଭୋଗିବାକୁ ପଡ଼େ
ନିନ୍ଦା ଗାଳି ମାଡ କେତେ ।
ଚନ୍ଦନ ପ୍ରଲେପ ଯଥା,
ମାଖି ଥାନ୍ତି ଏହା, ଶ୍ରୀଅଙ୍ଗେ ପ୍ରଭୁ
ନଥାଏ ମନରେ ବ୍ୟଥା ।

ଏ ଦେଶେ ସମ୍ଭବ, କାଠ ପାଷାଣର
ମୂର୍ତ୍ତିରେ ଜୀବନ ଲୀଳା,
ପ୍ରେମ ଭକ୍ତି ବଳେ ଦେବତା ଏଠାରେ
ରଚନ୍ତି ମାନବ ଲୀଳା ।
ପୁଣ୍ୟ ପରିବାର ପ୍ରଥା ଭାରତର
ବିଶ୍ୱର ବିସ୍ମୟ ପୁଣ,
ଏକ ପତିବ୍ରତ, ଏକ ନାରୀବ୍ରତ
ସେବା ବ୍ରତ ଅନୁଷ୍ଠାନ ।

କର୍ମ, ଧର୍ମ, ଶାନ୍ତି ସୁଖ କର୍ତ୍ତବ୍ୟର
ଅଟେ ଏ ମିଳନ ପୀଠ,
ପ୍ରୀତି ଦେବାଳୟ, ଆଦର୍ଶ ଆଳୟ
ବିଶ୍ୱକୁ ଦେଖାଏ ବାଟ ।

ସମାଜ ଜୀବନ, ରାଷ୍ଟ୍ର ନିରିମାଣ
ଅନୁଶାସନର ସୂତ୍ର,
ଏଇ ପରିବାର ଶିଖାଏ ଆମକୁ
ତ୍ୟାଗର ମହାନମନ୍ତ୍ର ।

ପୃଥିବୀଠୁ ବଡ଼ ମାତା ଅଟେ ତା'ର
ଆକାଶଠୁ ବଡ଼ ପିତା,
ଏ' କଥା ଶିଖାଏ ଶାସ୍ତ୍ରବାଣୀ ତା'ର
ବନ୍ଦିତ ନୀତିକଥା ।

ପୃଥିବୀ ପାଇନି ରାମ ପରି ରାଜା
ଲକ୍ଷ୍ମଣଙ୍କ ପରି ଭାଇ,
ଗାନ୍ଧାରୀ ଉର୍ମିଳା ସାବିତ୍ରୀଙ୍କ ପରି
ପତ୍ନୀ, ସୀତା ସେବାମୟୀ ।
ଗୌତମ, ଜନକ, ବଶିଷ୍ଠ, ନାରଦ
ବିଶ୍ୱାମିତ୍ର, ଭରଦ୍ୱାଜ,
ମହର୍ଷି ମଣ୍ଡଳ ମଙ୍ଗଳମୟ
ସୂକ୍ଷ୍ମ ରୂପେ ଉଭା ଆଜ ।
ମହା ମାନବର ପୁଣ୍ୟ ଭାରତ ଭୂମି
ଏ ମହା ମାଟିର ସନ୍ତାନ ଆମେ
ହେବା ତା'ର ଅନୁଗାମୀ ।

•

୯୩

# ବିଭାବରୀ

ବିଭାବରୀ ଗାଉଥିଲା ଗୀତ
ଶୋଇପଡ଼ ମୋ' କୋଳରେ
ହେ ସନ୍ତାନ ! ଏ ବିଶ୍ୱ ଜଗତ ।
ଦିନର ସଂଘର୍ଷ କ୍ଳାନ୍ତି, ଶ୍ରାନ୍ତି ଯାଅ ଭୁଲି
ମୋ' କୋଳରେ ଶୋଇ ପଡ଼ି -
ବ୍ରହ୍ମାଣ୍ଡକୁ ଥରେ ଆସ ବୁଲି ।

ସପନର ପକ୍ଷୀରାଜ ଘୋଡ଼ାପରେ ବସି
ବୁଲୁଥିବେ ପରି ରାଣୀ ତାଙ୍କ ସାଥେ ମିଶି
ଘୂରି ଆସ ଏ ବିଶ୍ୱ ବଳୟ,
କେତେ ଦୃଶ୍ୟ ଦେଖି ଆସ
ଲେଖି ଲେଖି ଶ୍ରଦ୍ଧା ପରିଚୟ ।

ଆସିବେ ପାଖକୁ ମାଡ଼ି କିନ୍ନର କିନ୍ନରୀ
ଉଠିବନି ମୋ କୋଳରୁ
ସେମାନଙ୍କୁ ଡ଼ରି,
ମା' ବୋଲି ଡାକି ଦେଲେ ଥରେ
ନିବିଡ଼େ କୋଳେଇ ନେବି ଅଭୟ ବୁକୁରେ ।

ବାସମୟୀ ହାସମୟୀ କୁସୁମିକା ସାଥେ
ଦେଖା ହେଲେ କହିଦେବ, ଆଗୋ କୁସୁମିକେ !
ତୁମକୁ ଗୋ ଝୁରି ହୁଏ କବି,
ଫୁଟୁନି ଉଦ୍ୟାନେ ତା'ର, ତୁମ ରୂପଛବି ।

ଜ୍ୟୋସ୍ନାମୟୀ ଏ ଆକାଶ ତଳେ
ତା' ଚିତ୍ତ ଚନ୍ଦ୍ରମା ଆଉ ହସୁନାହିଁ
ମେଘମାଳା ପଣତ ଉହାଡ଼େ ।
ହେଲାଣି ଗମ୍ଭୀର
ହଜିଲାଣି ତା' ଲେଖନୀ ସ୍ୱର,
ପ୍ରକୃତିକୁ ସେ ଗଲାଣି ଭୁଲି
ତା' ଲେଖନୀ ଆଙ୍କୁଅଛି
ସମାଜର ସଂଘାତ ଖାଲି ।
ଆର୍ତ୍ତ ହାହାକାର
ଲେଖନୀକୁ କରିଛି ଅସ୍ଥିର ।

କବିକୁ ଦେଖିଲେ ତୁମେ କହିଦେବ ଥରେ
ପ୍ରକୃତିମୁଖୀ ସେ କରୁ ଲେଖନୀକୁ ତା'ରେ
ଅଛି ତହିଁ ସବୁ ସମାଧାନ
ଗାଇ ଉଠୁ ପ୍ରକୃତି ମହାନ୍
ପ୍ରକୃତି ମହାନ ।

•

୯୪

# ସଞ୍ଜ ଆସର

ଆଉ କେହି ବୃଦ୍ଧ ବନ୍ଧୁ
ପାଶେ ମୋର ନାହାନ୍ତି
ସଞ୍ଜବେଳେ ଆସରକୁ
ଆଉ ଆସୁନାହାନ୍ତି ।
କାହା ଗୋଡ ଭାଙ୍ଗିଗଲା
ନ ପାରନ୍ତି ଚାଲି ସେ
କା' ଆଖିକୁ ଦିଶୁନାହିଁ
ନ ଆସନ୍ତି ବୁଲି ସେ ।

ବ୍ରହ୍ମଲୀନ କେ ହେଲେଣି
ଅଦିନରେ ଅକାଳେ,
ଯାହାଙ୍କୁ ମୁଁ ଭେଟୁଥିଲି
ନିତି ସଞ୍ଜ ସକାଳେ ।
ଥିରି ଥିରି ହାତେ ଧରି
ଆଶାବାଡ଼ି କିଏ ସେ
ଦମ୍ଭ ଧରି ଆସୁଥିଲେ
ଦିନାକେତେ ସାହସେ,
ଏବେ ମୁଣ୍ଡ ବୁଲାଏ
କଟଡ଼ା କଟଡା ପଡି,
ଘା' ଗଉଡରେ ଭରି,
ଛାଡନ୍ତିନି ଘରୁ ତାଙ୍କୁ ପିଲାଏ ।

ସଂଧ୍ୟା ଆସର ଆଉ ଜମୁନି
ବନ୍ଧୁ ଦେଖିବାର ବେଳେ,
ଦେଖା ମୋହ ଥମୁନି ।

ଏକା ଏକା ବସୁଛି ମୁଁ ଦିନ ଦିନ ମଉନେ
ଚାହିଁ ଚାହିଁ ଆକାଶକୁ ମୋ ଆତୁର ନୟନେ,
ମୋହ ମାୟା ମମତା ମୋ ବୋଳେ ବୁକେ ଘନିମା
ସେ ନୀଳିମା ଆବେଶେରେ ମନ ମୋର ନୀଳିମା
ଚାହୁଁଛି ମୁଁ ବାରବାର ଆକାଶେ,
ସେ ନୀଳିମ ଆବେଶେରେ ସେ ନୀଳିମ ଆବେଶେ
ହାତ ଠାରି ଡାକୁଛି,
ହାଟ ମୋ' ସରିନି ବୋଲି ମୁଁ ତାହାଙ୍କୁ କହୁଛି ।

•

୯୫

# ବସନ୍ତ ଉତ୍ସବ

ଆଜି ଅଟେ ବସନ୍ତ ଉତ୍ସବ
ଯୌବନର ବିପୁଳିତ ଉଲ୍ଲାସ ପ୍ରବାହେ
ଧରା ବୁକେ ରୂପର ବିଭବ ।
ଚର୍ଚ୍ଚରୀର ଘଣ୍ଟ ନାଦେ, ତୂରୀ, ଭେରି
କାହାଳୀ କମ୍ପନେ,
ବସନ୍ତ ବିଜୟ ଗୀତି ନିର୍ଘୋଷିତ
ଗଗନେ ପବନେ,
ତରୁ ବୀଥି ନବ କିଶଳୟେ
ମଣ୍ଡିତ ହୋଇ ଯାଆନ୍ତି ବସନ୍ତ ଆଳୟେ ।
ରାଜୋତ୍ସବେ ଯୋଗ ଦେବା ପାଇଁ
ଯାଉଛି ଚାରଣ ଗୀତି ପିକ ଗାଇ ଗାଇ ।

କିଂଶୁକ ରକ୍ତ କୁସୁମ ବସନ୍ତ କେତନ
ଉଡ଼େ ଫର ଫର ଉର୍ଦ୍ଧ୍ୱେ ଶୋଭି ଘନବନ,
ବସନ୍ତର ହସେ ରଙ୍ଗପୁରୀ
ଉନ୍ମାଦିତ ମଳୟ ଶୃଙ୍ଗାରୀ ।

ବିରହିଣୀ ବଧୂ ଝୁରେ ନିଶିଥିନୀ ବୁକେ,
ପୂର୍ଣ୍ଣିମାର ବିଧୁ ଦେଖି
ବିଧୁମୁଖୀ ବଧୂ ମ୍ଳାନ ମୁଖେ
ଚାହିଁଛି ଉଦାସେ
ଖେଳିବ କା' ସାଥେ ବୋଲି, ରଙ୍ଗହୋଲି
ହାସ ପରିହାସେ ।

ବସିଛି ବିରହୀ କବି ତା' ଲେଖନୀ ଧରି
ପାଗୁନି, ତାରୁଣ୍ୟ ରଙ୍ଗହୋଲିରେ ପହଁରି,
ଚାହିଁଛି ବିକଳେ
ଇଚ୍ଛା ହୁଏ ଲୋଟିଯିବ ରଙ୍ଗର ଦୁକୂଳେ ।

ଗତାୟୁ ବୟସମାନେ
ତା' ଦୁଆରେ କରୁଛନ୍ତି ସଭା,
ସ୍ମୃତି ଫେଣ୍ଟା, ରଙ୍ଗ ହୋଲି ଖେଳୁଛନ୍ତି
କେଡ଼େ ମନ ଲୋଭା ।
ତା' ଲେଖନୀ ନାୟିକା ସକଳ
କବିର ସେ ବାଣୀ ବନେ ତୋଳୁଛନ୍ତି
ମତ୍ତ କୋଳାହଳ ।

କବି ସ୍ୱପ୍ନ ବନେ ତହିଁ ଫଗୁ ମୁଠା ଧରି
ଉଲ୍ଲସୀ ଉଠନ୍ତି ମନେ -
ମାରି ମାରି ରଙ୍ଗ ପିଚିକାରି ।
କିଏ କହେ ଚୁପି ଚୁପି କାନେ
"ତୁମେ ଚିର ତରୁଣ ହେ କବି !
ସ୍ୱପ୍ନପୁରୀ ବସନ୍ତ ଉଦ୍ୟାନେ ।
ଲେଖନୀରେ ରଙ୍ଗ ଦିଅ ବୋଲି
ରଙ୍ଗମୟ କରିଦିଅ ସର୍ଜନାର ତୂଳି ।"

●

୯୬

# ମା

ସର୍ବଦା ସବୁରି ପାଶେ
ପାରିବେନି ଉପସ୍ଥିତ ରହି
'ମା'କୁ ଗଢ଼ିଲେ ପ୍ରଭୁ
ସେ ଦାୟିତ୍ୱ ତୁଲାଇବା ପାଇଁ,
ପ୍ରଭୁଙ୍କର ପ୍ରତିନିଧି ସିଏ
ଜଗିଥାଏ ଆମକୁ ସେ ପରାଣ ପରାଏ ।

ସିଏ ସୃଷ୍ଟି ଉଦ୍ୟାନରେ କର୍ମରତ ମାଳୀ
କରନ୍ତି ପୁଷ୍ପିତ ପ୍ରାଣ ଜୀବନ ସଂଚାରି,
ଆମକୁ କରନ୍ତି ସିଏ
ପିଣ୍ଡିତ ଓ ମଣ୍ଡିତ ଜୀବନେ
ଜୀବନକୁ ଅକୁଣ୍ଠିତେ ଭରନ୍ତି ସୁଗୁଣେ,
ସେ ଦାନର ନାହିଁ ପ୍ରତିଦାନ
ଯେତେ ଯାହା ଦେଲେ ମଧ ନହୁଏ ସମାନ ।

ଜୀବନର ଅସରନ୍ତି ଘାତ ପ୍ରତିଘାତେ
ଆଶ୍ୱାସନା ଦିଅନ୍ତି ସେ ଦୁଃଖେ ଅବିରତେ,
ସ୍ନେହ ଶ୍ରଦ୍ଧା ଭରି ଦେଇ ପ୍ରାଣେ
କହନ୍ତି, ବାବୁରେ ! ଦୁଃଖ ଘୁଞ୍ଚିଯିବ ଦିନେ ।

ଧୈର୍ଯ୍ୟ ଧର, ସବୁ ଦୁଃଖ ହେବ ଅବସାନ
ଏହା ଅଟେ ତ୍ରାଣମୟ କର୍ତ୍ତାଙ୍କ ବିଧାନ,
ଜୀବନର ସର୍ବ ସୁଖ ଶାନ୍ତିର ସରଣୀ
ପରମ ସୌଭାଗ୍ୟ ଦାନ କରନ୍ତି ଜନନୀ
ତାଙ୍କ ପଦେ ରହୁ ସଦାଳୟ,
ଶାନ୍ତିର ଭଣ୍ଡାର ସିଏ, ଅଭୟ ଅକ୍ଷୟ ।

•

୯୭

# ଅଶାନ୍ତ ପଥିକ

ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଅନନ୍ତ ଆକାଶ
ତଳେ ମହା ଅନ୍ଧକାର ମହିମ ପ୍ରକାଶ,
ମଧ୍ୟେ ମୁହିଁ ହୋଇଅଛି ଉଭା
ଏକାକୀତ୍ୱ ବସାଇଛି
ମୋ' ସତ୍ତାର ଚଉପାଶେ ସଭା ।

ଅଛନ୍ତି ପାଖରେ ମୋର କେତେ ପ୍ରିୟଜନ
ସମସ୍ତଙ୍କ ସାଥେ ଅଛି ମୋ ହୃଦୟ ମନ,
ସବୁତ ପାଇଛି ମୁହିଁ କିଛି ନାହିଁ ବାକୀ
ତଥାପି ଲାଗୁଛି କିଆଁ ଏକାକୀ ଏକାକୀ ।

ଆକାଶ ଡାକୁଛି ଆସ
ମୋ ବୁକୁରେ ସବୁ ଅଛି ଭରି
ଶୂନ୍ୟତାର ପରିଭାଷା -
ପୂର୍ଣ୍ଣତାକୁ ନେ' ତୁ ଆଦରି,
ମୋ' କୋଳକୁ ଚାଲିଆ ପଥିକ
ଭରିଛି ଆଲୋକ ଏଥି...ଅଜଣା ପୁଲକ ।
ଏକାକୀତ୍ୱ ରହିବନି ଲେଶ
ପାଇବୁ ତୁ' ସମ୍ପର୍କର ନିବିଡ଼ ପରଶ ।

ଅନ୍ଧାର ଡାକୁଛି ତଳେ,
ମୋ କୋଳକୁ କର ଅଭିସାର
ଅଟଇ ଜନନୀ ମୁଁ ତ
'ଅନାହତ ଆଲୋକ ଭଣ୍ଡାର',
ଏକାକୀତ୍ୱ ରହିବନି ଏଥି
ଖୋଜା ଲୋଡା ଅଛି ଯେଣୁ
ପ୍ରାଣମୟ ସଂପର୍କ ପୀରତି ।

ଆଶ୍ୱାସିଲା କିଏ ସିଞ୍ଚି
ପ୍ରାଣେ ଶାନ୍ତି ବାରି
ମୋ' କୋଳେ ଥାଇ ତୁ କହ
ଏକାକୀ କିପରି ?

ମଧୁର ଏ' ବିଶ୍ୱପ୍ରାଣ
ଏ' ବିଶ୍ୱ ଜୀବନ,
ମଧୁର ଏ' ସୁଖ ଦୁଃଖ
ନିତ୍ୟ ଉଚ୍ଚାରଣ ।
ଯେତେ ଯାହା ପୀଡ଼ନା ଯାତନା
ପ୍ରାଣ ସଙ୍ଗୀତର ତାହା
ଏକ ଏକ ନିରୋଳା ମୂର୍ଚ୍ଛନା ।
ଏକରେ ଅନେକ
ଖୋଜିଲେ ପାଇବୁ ନିଶ୍ଚେ
ପଥହରା ଅଶାନ୍ତ ପଥିକ ।

•

୯୮

# ଅମୃତ ଆଦେଶ

ରାଜ ରାସ୍ତାରେ ବୁଲୁଥିଲେ ରାଜା
ପ୍ରଭାତ ଭ୍ରମଣ ପାଇଁ,
ଦେଖିଲେ ଗହଳ ଗଛରୁ ଓହ୍ଲାଏ
ପକ୍ଷୀଟିଏ କିଏ ନେଇ,
ଧରି ଅଛି କଉଶଳେ
ଚିତ୍କାର କରେ ପକ୍ଷୀଟି ବିକଳେ
ଉଡ଼ିଯିବ ଗଛଡାଳେ ।

ଆଦେଶିଲେ ରାଜା ପକ୍ଷୀଟିକୁ ଆଣି
କରିବାକୁ ସମର୍ପଣ,
ସିଏ ଆଣି ପଦେ ଅର୍ପଣ କଲା
ରାଜାଙ୍କର ଖୁସି ମନ ।
ପୁରସ୍କାର ଦେଲେ ରାଜା
ପକ୍ଷୀଟିକୁ ଆଣି ଉଡାଇ ଦେଲେ ସେ
ଉଡ଼ିଗଲା ଦିଗହଜା ।

ଟିକି ଚଢ଼େଇଟି ଉଡିଯାଇ କଲା -
ରାଜାଙ୍କର ଜୟଗାନ
କହିଲା, "ହେ ପ୍ରଭୁ ! ଉଦାର କରହେ !
ମଧୁର, ରାଜାଙ୍କ ମନ
ଏତିକି ମାଗୁଣି ମୋର
ପଶୁ, ପକ୍ଷୀ, ପ୍ରଜା ଆନନ୍ଦେ ରହନ୍ତୁ,
ଏ' ରାଇଜ ତାଙ୍କ ଘର ।"

ପକ୍ଷୀ କଥା ଶୁଣି, ରାଜା ମନେ ଭରି
ଆନନ୍ଦ ଓ ପରିତୋଷ,
ସାରା ରାଇଜରେ ଘୋଷଣା କରିଲେ
ଏହା ଅଟେ ରାଜାଦେଶ ।
ଆଜିଠାରୁ କେହି ପୋଷା ପଶୁପକ୍ଷୀ
ରଖି ପାରିବେନି ଘରେ,
ସେମାନେ ରହିବେ ତାଙ୍କ ନିଜଘରେ
ବନସ୍ତରେ ଗଛଡାଳେ
ଯେପରି ଅଛନ୍ତି ପ୍ରଜା,
ମହା ଆନନ୍ଦରେ ରହିବେ ସେପରି
ତାଙ୍କର ଏ ରାଜ୍ୟ, ରାଜା ।

ମଣିଷ ସେବାରେ ମଣିଷ ଗହଣେ
ରହିଛନ୍ତି ଯେତେ ଜୀବ,
ତାଙ୍କ ସୁଖ ସେବା ମଣିଷ କରିବେ
ନ ଦେବେ ସେ ପରାଭବ,
ହେଲେ ତିଳେ ବ୍ୟତିକ୍ରମ
ଭୋଗିବାକୁ ହେବ କଠିନୁ କଠୋର -
ଦଣ୍ଡ ଯା' ନିରିମମ,
ଦଣ୍ଡ ଯା' ନିରିମମ ।

•

୯୯

# ମୁଁ ଅଟେ ବିଲେଇ ବୈଜ୍ଞାନିକ

ମୁଁ ଅଟେ ବିଲେଇ ବୈଜ୍ଞାନିକ
ନା'ଟା ମୋର "ଫେଲିଟ୍",
ଫ୍ରାନ୍ସ ଦେଶରେ ଜନମ ମୋହର
ବୈଜ୍ଞାନିକ ମୁଁ ହେଲିଟି ।

ମହାକାଶର ସେ ବିଜ୍ଞାନ ପାଠ
ମହା ଆନନ୍ଦେ ପଢ଼ିଲି ମୁହିଁ,
କେତେ ବିଜ୍ଞାନୀ ଲାଗି ପଡିଥିଲେ
ବିଲେଇ ଛୁଆର ତାଲିମ୍ ପାଇଁ
କିପରି ଚଳିବ ସରଗ ଗଲେ,
ନୂଆ ନୂଆ କଥା ଶିଖାଇ ଦେଲେ ।
ମୂଷା ଖାଇଲିନି ଜୀବନେ ଆଉ
ଦାମୀ ଖାଦ୍ୟ ଖାଇ ବଢ଼ାଏ ଆୟୁ
ଅଳପ ଦିନରେ ସବୁ ଶିଖିଗଲି
ହେଲି ମୁଁ ପକ୍କା
ହୋଇଲି ବିଲେଇ ବୈଜ୍ଞାନିକ ମୁଁ
ମୋ, ନାଁ ଫେଲ୍‌ଟି
ନାହିଁ ମୋ ଦକା ।

ଊଣେଇଶ ଶହ ତେଷଠି ଥିଲା
ସେହି ମସିହା
ମନଟା ମୋ'ର ଥିଲା ଆନନ୍ଦରେ
ଖୁସି ବାସିଆ,
ବୁଲି ଆସିବି ମୁଁ ସରଗପୁର
ଦେଖି ଆସିବି ମୁଁ
କେଡ଼େ ସୁନ୍ଦର ସେ, କେଡ଼େ ସୁନ୍ଦର ।

ଯିବି ବୋଲି, ମୋତେ
ଆକାଶ ପୋଷାକ ପିନ୍ଧାଇ ଦେଲେ
ଜୁଲୁ ଜୁଲୁ ଜୁଲୁ
ଚାହୁଁ ଥିଲି ମୁହିଁ କଣ୍ଢେଇ ତୁଲେ ।
ହେଲି ବାହାର
ସତେ ଅବା ଝିଅ ଯାଉଅଛି ଏବେ
ତା' ଶାଶୂ ଘର ।
ଆଖିରୁ ଝରିଲା ଲୋତକ ଝର ।

ଶୁଭ ବେଳ ଦେଖି ମହାଆକାଶକୁ
ଉଠିଲା ରକେଟ୍ ବିଜୁଳି ବେଗେ,
ଭୟେ ଦେହ ମନ ଥରି ଉଠୁଥିଲା
ଏକଲା ଯାତ୍ରୀ ମୁଁ ଅନ୍ତରୀକ୍ଷେ ।
ପହଞ୍ଚିଗଲି ମୁଁ ପହଞ୍ଚି ଗଲି,
ମ୍ୟାଉଁ ମ୍ୟାଉଁ ଡାକି ସରଗ ପୁରରେ
ଆନନ୍ଦେ ଚହଳ ପକାଇ ଦେଲି ।
ଚମକି ପଡିଲେ ସରଗବାସୀ,
କହିଲେ, "କିମିତି ପହଞ୍ଚି ଯାଇଛି
ବିଲେଇଟେ ଏଠି ମରତୁ ଆସି ।"
ହସି ହସି ହସି କହିଲି ମୁହିଁ,
ବୈଜ୍ଞାନିକ ମୁଁ ଆସିଛି ଏ ପୁରେ
ମହାକାଶେ ଥରେ ବୁଲିବା ପାଇଁ
ବୁଲିବା ପାଇଁ ।
ମରତେ ସରବେ ବୈଜ୍ଞାନିକ
ଏହାହିଁ ରଖିଛି ମରତ ଟେକ !

•

ବି.ଦ୍ର. : ୧୯୬୩ ମସିହାରେ ଫ୍ରାନ୍ସ ସରକାର ମହାକାଶକୁ ଏକ ବିଲେଇ ପଠାଇଥିଲେ ।

୧୦୦

# ଅବୋଧ ସଂହିତା

ଦିବ୍ୟ ଚିନ୍ତନ ସମ୍ଭୂତ ସେ ମହା ଦେବତା
ସର୍ବଭାବାତ୍ମକ ସର୍ବରୂପାତ୍ମକ ସତ୍ତା,
ବିଶ୍ୱ ଜଗତର ସେ'ତ ଅନନ୍ତ ପ୍ରତୀକ
ପ୍ରଭୁ ପରଂବ୍ରହ୍ମ,
ଗଢ଼ିଛନ୍ତି ମହାଶକ୍ତି ଜ୍ୟୋତି ଦେବବ୍ରହ୍ମ ।

ସେ ଅଟନ୍ତି ମହାଶୂନ୍ୟ ଅନନ୍ତ ପ୍ରକାଶ
ସେ ପୁଣି ଅଶୂନ୍ୟ ସତ୍ତା, ସାନ୍ତ ଅପ୍ରକାଶ,
ପରମ ଆନନ୍ଦମୟ, ନିରାନନ୍ଦମୟ,
ଶାନ୍ତିର ସେ ସୁରଧୁନୀ, ଅଶାନ୍ତି ଆଳୟ
ତୃପ୍ତି ତରଙ୍ଗିଣୀ
ଅତୃପ୍ତିର ଜ୍ୱାଳାମୟ କ୍ଷୁଧିତ ରାଗିଣୀ ।

ସେ ଅଟନ୍ତି ବିଜ୍ଞାନର ଅପ୍ରମେୟ ଧାରା
ସେ'ବି, ଅବିଜ୍ଞାନମୟ, ଛାୟାଲୋକପରା !
ସେ ଅଟନ୍ତି ମନ୍ତ୍ରମୟ ଶବ୍ଦବ୍ରହ୍ମ 'ବେଦ'
ଅଭିବ୍ୟକ୍ତି ହୀନ ମଧ୍ୟ ଅଟନ୍ତି 'ଅବେଦ'
ସେ'ତ ଚରାଚର,
ସେ ଅଟନ୍ତି ସର୍ବଦେବ ପ୍ରଭୁ ପରାତ୍ପର ।

ସେ ପୁଣି ଅଟନ୍ତି ସର୍ବବିଦ୍ୟା ଅଧୀଶ୍ୱର
ତଥାପି କିପରି ଅବିଦ୍ୟା'ର ଗନ୍ତାଘର,
କାଳ କାଳ ଏ' ରହସ୍ୟ ହୁଏନାହିଁ ବୁଝି
ସେ ପୁଣି 'ଅଜ' 'ଅନଜ', ଏ'କି ସୃଷ୍ଟି ସୂଚି ? ?
ଅବୋଧ ସଂହିତା,
ତଥାପି ରହିଛି ଲୁଚି ଘନ ନିବିଡ଼ତା
ସେ ବେନି ମଧ୍ୟରେ,
ରହିଅଛି ରହିବ ତା' ଯୁଗ ଯୁଗାନ୍ତରେ ? ?

•

୧୦୧

# ବୁଝାମଣା

ତୁମେ ତ କେଡ଼େ ଶକ୍ତିମାନ
ପାରେନି ଯିଏ ବୁଝି
ଜୀବନ ମଣେ ସମର ଭୂମି
କ୍ଲାନ୍ତ ଯୁଝି ଯୁଝି ।
କାହିଁକି ତୁମେ କରୁନ ତାଙ୍କୁ ମନା !
କହୁନ କିଆଁ ପାଖରେ ଅଛି ବନ୍ଧୁ "ବୁଝାମଣା" ! !

ମନକୁ ସିଏ ବୁଝାଇ ଦେବ,
ସେନେହ ଟୁଳୁ ଟୁଳୁ
ବହିବ ମନେ ପ୍ରିୟପଣର
ପବନ ସୁଲୁ ସୁଲୁ,
ସ୍ୱଭାବ ହେବ ସେ ଭାବ ଦିଆ ନିଆ
ଥମିବ ଧୀରେ ଅଦିନ ଝଡ଼, ବହେ ଯେ ଅଝଟିଆ ।

ବୁଝାମଣାର ପାବନ ଧାରା
ବହିଲେ ସୁରଧୁନୀ,
ସ୍ୱର୍ଗ ହସେ ମର୍ତ୍ତ୍ୟବୁକେ,
କହେ ସେ ତୁନି ତୁନି
ଆସିଲି ସଖା ! ଆସିଲି ତୁମ ପୁରେ,
ଦୂରେଇ ଦେବି ତିକ୍ତଭାବ ଆପଣା ପଣିଆରେ ।
ସଖା ! ଆପଣା ପଣିଆରେ ! !

ଜୀବନେ ଯହିଁ ରହିଛି ସଖା !
ସୁସ୍ଥ ବୁଝାମଣା
ଜୀବନ ତହିଁ ଅଟେ ହେ ସଖା !
ସତେ ବା ରଣ ଜିଣା,
ନପାରେ ଟାଳି ଜୀବନ ଶରାଘାତ
ବୁଝାମଣାର ଢ଼ାଲ ସେ ଧରି କରଇ ପ୍ରତିହତ ।

ମନକୁ ମନ ବୁଝାଇ ଦେଲେ
ବାଣ୍ଟି ଦେଲେ ଭାବ
ହୁଅଇ ମନ ପଦ୍ମବନ
ଭରଇ ରୂପ ରାଗ
ଚହଟେ ଚାରୁ ହିଲ୍ଲୋଳିନୀ ହସ
କି ମଧୁମୟ ବୁଝାମଣାର ଲଳିତ ଅନୁପ୍ରାସ ।

•

୧୦୨

# ପିତୃତ୍ୱ

ନିରେଖି ଚାହିଁଛି ତା' ସୃଜନ କଳା
ସ୍ରଷ୍ଟାର ମନ ଆଜି ଭାବଉଛୁଳା
ଭାବୁଛି ସିଏ
ଭାବ ଭୂମିର ଖେଳ କଣ୍ଢେଇଟିଏ ।

ଯାହା ସେ ଚାହିଁଥିଲା ପାଇଛି ସବୁ
ଆଉତ ନାହିଁ କିଛି ସେ ପାଇବାକୁ
ଛାଡି ଦେବ ସେ ବାଟ,
ଭୂମିକୁ କରିବନି ସେ ଭାରାକ୍ରାନ୍ତ ।

ବିପୁଳ କଳାକୃତି କରି ସର୍ଜନା
କରୁଛି ବସି ସିଏ ତା'ର ତର୍ଜମା,
କାହାଠୁ କେତେ
ମିଛିଛି ସଫଳତା ସନ୍ତୋଷମତେ ।

କୋଳରେ ପଶିଯାଇ ସନ୍ତାନ ଏକ
ତୋଳିଲା କାନ୍ତ କଳା ତା' କଉତୁକ,
କହିଲା କବି !
"ମୁଁ ତୁମ ଲେଖନୀର ଲଳିତ ଛବି ।"

ଆସିଲା ଆଉଜଣେ ହସି ହସିକା
"ମାଖିଛି କପାଳେ ମୁଁ ବିଜୟଟିକା
କଳା ଚାତୁରୀ
କବି ହେ ! ମୋ ଭିତରେ ଦେଇଛ ଭରି ।"

ଭବ୍ୟ ଭାବର ମୁଁ ତ ଛବି ଅତୁଳ
ମୁଁ କି ନୁହଇ ତୁମ ସ୍ନେହ ବତ୍ସଳ !
କବି ହେ କବି !
ମୁଁ ପରା ତୁମ ମୁଗ୍ଧ ମନର ଛବି !

ମୋହିତ ମନର ମୁଁ ଅଟେ ପ୍ରକାଶ
କାହଠୁ କେଉଁ ଗୁଣେ ମୁଁ ନୁହେ ଲେଶ,
ମୁଁ ତ ଲହୁଲୀ
ମୋତେ କି କେବେ କବି ପାରିବ ଭୁଲି ! !

ଏପରି ଜଣେ ଜଣେ ଆସନ୍ତି ପାଶେ
କବିର କୋଳେ ପଶି ବଡ଼ିମା ଘୋଷେ
ତୋଷନ୍ତି ମନ,
କରୁଣା ସିକ୍ତ ମୁଗ୍ଧ କବି ନୟନ ।

ଆସିଲା ମଥାପୋଡି କେ ଅଭିମାନୀ
କୋଳେ ନ ପଶି ଛିଡ଼ା ହେଲା ସେ ତୁନି
ଆନନ୍ଦେ କବି,
କୋଳକୁ ଟାଣିନେଲେ ଶ୍ରଦ୍ଧାରେ ଦ୍ରବି ।

ମାଖିଲେ ଘନ ଘନ ମୁଖେ ଚୁମ୍ବନ
କହିଲେ ଭାବୁଛୁକୁ କରିଛି ଆନ ?
ତୁ ତ, କସ୍ତୁରୀମୃଗ
ଭରିଛୁ ନିଜ ମଧ୍ୟେ ଗନ୍ଧବିଭବ ।

ଫୁଟାଏ ନାନା ଫୁଲ ଉଦ୍ୟାନେ ମୋର
ମୋ ନୟନେ ସର୍ବଦା ସର୍ବେ ସୁନ୍ଦର
କାହାକୁ ଖାଲି
କହି ପାରିବି ଅତି ସୁନ୍ଦର ବୋଲି ।

କାହାକୁ ଆପଣାର ପାରିବି କହି
ସମସ୍ତେ ନେଇଛନ୍ତି ହୃଦୟ ମୋହି,
ଆପଣା ପଣ
କରିଛି ମହୀୟାନ୍ ସେ ଜଣ ଜଣ ।

ପିତୃତ୍ୱ ଅଟେ ଏକ ମହାନ୍ ସତ୍ତା
ସର୍ବ ଶୁଭ ଭାବର ଅଟଇ ଭର୍ତ୍ତା,
ମଙ୍ଗଳ ନିଧି,
ପ୍ରତୀକ ରୂପେ ତାକୁ ଗଢ଼ିଛି ବିଧି ।

•

୧୦୩

# ଚରୈବେତି...ଚରୈବେତି

ତ୍ରେତୟାଯୁଗରେ ଥିଲେ ଜଣେ ରାଜା
 ନାମ ତାଙ୍କ ହରିଶ୍ଚନ୍ଦ୍ର,
ସୂର୍ଯ୍ୟବଂଶର ସେ ଅଟନ୍ତି ରାଜନ
 ଦାନୀ, ମାନୀ, ଗୁଣୀ, ଭଦ୍ର ।

'ହରି'ଙ୍କ ସଦୃଶ ରମଣୀୟ କାନ୍ତି
 ଖ୍ୟାତ ହରିଶ୍ଚନ୍ଦ୍ର ନାମେ,
ଦାନବୀର ବୋଲି ଜଗତେ ଜାଣନ୍ତି
 ସଦା ମଗ୍ନ ଦାନ ଧର୍ମେ ।

ତ୍ୟାଗତୀର୍ଥ ଅଟେ ତାଙ୍କ ରାଜଧାନୀ
 ପ୍ରସିଦ୍ଧ "ଶୋଭାରୁ ପୁର",
କେହି ନ ଫେରନ୍ତି ରିକ୍ତ ହସ୍ତେ ତହୁଁ
 ପରିପୂର୍ଣ୍ଣ ତାଙ୍କ ଥାଳ ।

ସେ ପ୍ରଜାବତ୍ସଳ, ଉଦାର ଅନ୍ତର
 ସନ୍ତୋଷେ ଦେବତାନର,
ଆଶୀର୍ବାଦ ଢ଼ାଳି ଶୁଭ ମନାସନ୍ତି
 ତ୍ୟାଗ ବୀର ରାଜାଙ୍କର ।

ଚହଳ ପଡ଼ିଲା ସରଗ ରାଇଜେ
 ରାଜାଙ୍କର ଜୟଗାନେ,
ଇନ୍ଦ୍ରଙ୍କ ଆସନ ହେଲା ଟଳମଳ
 ଈର୍ଷା, କ୍ରୋଧ, ଅଭିମାନେ;
 ଇନ୍ଦ୍ରପଦ ଯିବ ଚାଲି
 ହୁଅନ୍ତି ବିବ୍ରତେ ଭାଳି ।

ବରୁଣଙ୍କ କୋପେ, ଉଦରୀ ରୋଗରେ
ଆକ୍ରାନ୍ତ ହୋଇଲେ ରାଜା,
ସରଗେ ମରତେ ଚହଳ ପଡ଼ିଲା
ପ୍ରତିକାର ହେଲା ଖୋଜା ।

ପୁତ୍ର 'ରୋହିତାଶ୍ୱ' ବନେ ବୁଲୁଥିଲେ
ଆରୋହି ଲୋହିତ ଅଶ୍ୱେ
ସେ'ତ ବନଚାରୀ, ମନ 'ବ୍ରହ୍ମପୁରୀ'
ପ୍ରଶାନ୍ତ ଲୋହିତ ଲାସ୍ୟେ ।

ରାଜଦୂତ ଠାରୁ ମିଳିଲା ସମ୍ବାଦ,
ଅଟନ୍ତି ପୀଡ଼ିତ ପିତା,
ବନ ଭ୍ରମଣରୁ ଫେରିଲେ ନଅରେ
ମନେ ବହି ଗୁରୁଚିନ୍ତା ।

ଛଦ୍ମବେଶୀ ଏକ ବୃଦ୍ଧ ବ୍ରାହ୍ମଣଙ୍କୁ
ଭେଟିଲେ ବାହୁଡ଼ା ପଥେ
ପ୍ରଣମି ପଦରେ କହିଲେ, 'ବହ୍ମର୍ଷି !
ଆଶିଷ ଦିଅନ୍ତୁ ମୋତେ
ପିତା ଜଳୋଦରୀ କ୍ରାନ୍ତ,
ତବ ଆଶୀର୍ବାଦେ ସେ ସୁସ୍ଥ ହୁଅନ୍ତୁ
ରୋଗ ହୋଇ ଯାଉ ଶାନ୍ତ ।'

ଉଦ୍‌ବୋଧନ ବାଣୀ ଶୁଣାଇଲେ ବିପ୍ର
'ଚରୈବେତି....ଚରୈବେତି',
ଲକ୍ଷ୍ୟ ତୁମର ହୋଇବ ପୂରଣ
ରାଜପୁତ୍ର ସେବାବ୍ରତୀ !
ଚରୈବେତି....ଚରୈବେତି ।

•

ବି.ଦ୍ର : ଚରୈବେତି - ଉଦ୍ୟମରେ ଆଗେଇ ଚାଲ   ତଥ୍ୟ : ଐତେରୀୟ ଉପନିଷଦ ।

୧୦୪

# ଜୋରିମାନା ଭୋଗ

କୋଠ ଭୋଗଖିଆ ଠାକୁର ଆମ
ବିଜେ କରିଛନ୍ତି ନୀଳାଦ୍ରି ଧାମ
ଜଗତ ନାଥ,
ତାଙ୍କୁ ନେଇ କେତେ ଘଟଣା ଘଟିଛି
ଦୂର ଅତୀତ ।

ପୁରୀ ଗଜପତି ଭକତ ଶ୍ରେଷ୍ଠ
ଖଟନ୍ତି ସେବକ ଭକତି ନିଷ୍ଠ
ମଣୋହି ତାଟ
ସକାଳ ଧୂପକୁ ପଠାନ୍ତି ନିଇତି
ସେବକପାଟ ।

ଅରୁଆ ଚାଉଳ, ପନି ପରିବା
ନୂଆ ଫଳ, ରାଜ ଉଦ୍ୟାନୁ ଅବା
ଅନେକ ଦ୍ରବ୍ୟ,
ପହିଲି ଧୂପର ମଣୋହି ସାମଗ୍ରୀ
ଅଟେ କି ଭବ୍ୟ ।

ସକାଳ ଧୂପର ମଣୋହି ତାଟ
ଆସେ ଉଆସରୁ ନିରୋଳା ଥାଟ
ବୋଝିଆ ଆଣି,
ମହାସୂପକାରେ ପବିତ୍ର ରୀତିରେ
ଦିଏ ତା' ପୁଣି ।

ପ୍ରଭୁଙ୍କର ରୋଷଶାଳାରେ ଦୁଇ
ଚୂଲା ଅଛି, ଭୋଗ ପ୍ରସ୍ତୁତ ପାଇଁ,
ଅତି ଯତନେ
ଭୋଗ ରନ୍ଧା ଯାଇ ସକାଳ ଧୂପରେ
ଲାଗେ ଧିଆନେ ।

ଦେଉଳିଆ ଦିଶେ ଫଗୁଆ ବୋଝ
ଅଣାଯାଏ ତହିଁ ଭୋଗର ସାଜ
ଯାଏ ନହରେ,
ଭୋଗ ପାଇବାକୁ ଚାହିଁ ଥାନ୍ତି ରାଜା
ରାଜବାଟିରେ ।

ରାଜୋଦ୍ୟାନ ନୂଆ ଫଳ ପରିବା
ଲାଗେ ଠାକୁରଙ୍କ ମଣୋହି ସେବା
ସକାଳ ଧୂପେ
ଯାଇଛି ପହିଲି ଫଳ ରୂପେ ଲଙ୍କା
ମଣୋହି ତାଟେ ।

ଦେଖି ଆଚମ୍ବିତ ମହାସୁଆର
କିପରି ରାନ୍ଧିବେ ଏ ତାଟ ଭାର,
ଭୋଗରେ ଲଙ୍କା
ଲାଗେ ନାହିଁ, ତାହା ଠାକୁରଙ୍କ ପାଶେ
ମନରେ ଶଙ୍କା ।

ରାଜ ଉଆସକୁ ଗଲେ ଦଉଡି
ରାଜାଙ୍କୁ ଭେଟିଲେ ରାନ୍ଧଣା ଛାଡି
ଚକିତ ରାଜା
କହିଲେ କର୍ତ୍ତବ୍ୟେ ଅବହେଳା କଲ
ଭୋଗିବ ସଜା ।

ଆସିଛି ଛାମୁରେ ଗୁହାରି କରି
ଅପରାଧ ମମ ନିଶ୍ଚୟ ଭାରି
କରିବି କ'ଣ ?
ଡାଟଭାରେ ଲଙ୍କାମରିଚ ଯାଇଛି,
ନିଷେଧ ପୁଣ ।

ଠାକୁରଙ୍କ ଭୋଗେ ଲାଗେନି ଲଙ୍କା
ତେଣୁ ଉପୁଜିଲା ମନରେ ଶଙ୍କା,
ଛାମୁଙ୍କ ପାଶେ
ଆସିଛି ମଣିମା ଦେବନୀତି ଛାଡ଼ି
ଆଦେଶ ଆଶେ ।

ଅତିବ୍ୟସ୍ତ ହୋଇ ସେବକ ରାଜା,
କହିଲେ, "ଏ' ରାଜା ଭୋଗିବେ ସଜା,
ନୀତି ବିଭ୍ରାଟ
ତାଙ୍କ ପାଇଁ ହୋଲା' ତୁମ ଦୋଷ ନାହିଁ
ଦୋଷୀ ସମ୍ରାଟ ।

ରାଜଦଣ୍ଡ, ରାଜା ଭୋଗିବେ ନିଜେ,
ଗୁରୁ ଅପରାଧ କରିଲେ ସେ'ଯେ
ତା' ପ୍ରାୟଶ୍ଚିତ
ଏକଶହ ଆଠଟଙ୍କା ଜୋରିମାନା
ଅଟେ ବିହିତ ।

କିଣାଗଲା ଭୋଗ ସାମଗ୍ରୀ ନୂଆ
ପ୍ରଭୁଙ୍କ ଭୋଗରେ ହୋଇଲା ଥୁଆ
ରନ୍ଧନ ସାରି
ବିତରିତ ହେଲା ସାଧୁସନ୍ଥ ଜନେ
ଭୋଗ ସବାରି

ହାତ ଯୋଡ଼ି ରାଜା କହିଲେ ତହିଁ,
'ଭୋଗତାଟେ ଲଙ୍କାମରିଚ ଦେଇ
କଲି ଅନୀତି
ପ୍ରାୟଶ୍ଚିତ ରୂପେ ଜୋରିମାନା ଭୋଗ
ସର୍ବେ ସେବନ୍ତି ।
ପ୍ରଭୁଙ୍କର ପଦେ ମାଗେ ଅଭୟ,
ସାଧୁ ସନ୍ଥଗଣ ଆନନ୍ଦେ କହିଲେ
'ହେଉ ମହା ମାନ୍ୟ ରାଜାଙ୍କ ଜୟ,
କଟିଲା ରିଷ୍ଟ
ସର୍ବେ ସନ୍ତୁଷ୍ଟ ।

•

୧୦୫

# ବିଦାୟ ବନ୍ଧୁ

ହେ ବୃକ୍ଷବନ୍ଧୁ ! ହେ ପ୍ରିୟସଖା !
ତୁମେ ଥିଲ ସଦା, ଦରଦୀ କବିର
ସ୍ନେହ ଶ୍ରଦ୍ଧାଭରା
ପୀରତି ମଖା,
ହେ ବୃକ୍ଷବନ୍ଧୁ ! ହେ ପ୍ରିୟ ସଖା !

ତୁମେ ଦେଇଥିଲ ପ୍ରେରଣା କେତେ
ଭାଷାମୟ କରି ଲେଖନୀକୁ ତା'ର
'ରତ'ର ଗୁତେ,
ଭାବନା ସ୍ରୋତେ
ହେ ବୃକ୍ଷବନ୍ଧୁ ! ଜ୍ୟୋତ୍ସ୍ନାରାତେ ।

ତୁମର ଅଭୁଲା ସବୁଜ ଶିରୀ
ନବ ପଲ୍ଲବ ପାଟ ପାଟଳିମା
କମ୍ର କଳି,
ଯାଏ ସେ ଭଳି
ମୁଗ୍ଧ ଆବେଗେ, ହୃଦୟ ଭରି ।

କବି କଲମକୁ ଓହ୍ଲାଇ ଆସି
ରୂପ ତୃଷ୍ଣା ତା' ରୂପରେ ତୋଷି,
ଦିଅ ହେ ଶାନ୍ତି
ପରମ ତୃପ୍ତି
ରୂପରାଣୀ ତୁମ କାନ୍ତ କାନ୍ତି ।

ଅତିନ୍ଦ୍ରିୟ ପୁରେ ସେ ଭ୍ରମି ଭ୍ରମି
ଭାବ ବଳୟକୁ ଫେରଇ ପୁଣି,
ବିଭୋର ହୋଇ
ପାଥେୟ ନେଇ
ଦିବ୍ୟ ଭାବର ଉଛୁଳା ନଈ ।

ହଠାତ୍ ତାହାର ଇଏ କି' ହେଲା !
ନୟନ ଯୁଗଳ ଅଶ୍ରୁ ଝରା,
କିଏ ସେ ଆସି
ଛଦ୍ମ ବେଶୀ
ଛିଣ୍ଡାଇ ଦେଲା ତା' ଫୁଲ କଷି ।

ଭର୍ତ୍ସନା କଲା ସେ କ୍ରୋଧ ଭରେ
ଗଛ ଛାଇ ପଡ଼େ ଏ' ଘର ପରେ
ନୁହଇ ଶୁଭ,
ହାନି ବିଭବ
ଗଛ ଲଟା ସବୁ କଟା ହୋଇବ ।

ବଞ୍ଚିବା ପାଇଁ ଗଛର ଅଳି
ବିକଳରେ ପାରେ ସିଏ ବୋବାଳି
ନିଷ୍ଠୁର ମନ,
କରୁଣା ହୀନ
ରକ୍ଷା କରିଲାନି ବୃକ୍ଷ ଜୀବନ ।
ହାରିଲା, ବୃକ୍ଷ
ଜିତିଲା, ରୁକ୍ଷ ।

ଦ୍ରବୀଭୂତ ହେଲା କବିର ମନ
କ୍ରନ୍ଦୀତ ହେଲା ହୃଦୟପୁଣ,
ମାନିନି ମନା
ହୋଇଲା ହଣା
କବି ନୟନରେ ଲୋତକ ବନ୍ୟା ।

ସେ' ବୃକ୍ଷ ବନ୍ଧୁ ଶୀତଳ ଛାଇ
କବି କଲମରେ କବିତା ହୋଇ
ସେ ଆସିବନି,
ଝୁରେ ବାହୁନି
ରହିବ ମନେ ତା ସ୍ମୃତିରେ ପୁଣି ।

ବିଦାୟ ନିଅ ହେ ବିଦାୟ ନିଅ
କ୍ଷମାଶୀଳ ବନ୍ଧୁ ହେ କ୍ଷମା ଦିଅ,
ଘେନ ପ୍ରଣାମ
ହେ ପୁଣ୍ୟତମ
ଅନ୍ତିମ ଅର୍ଘ୍ୟ ଆରତି ମମ ।

•

୧୦୬

# ପ୍ରେମ ଦିବସ

ଜଗତ ପ୍ରେମମୟ ପ୍ରେମ ସୁନ୍ଦର
ମଧୁ ମାଦକେ, ଅଟେ କେ ପଟାନ୍ତର !
ପ୍ରୀତି ଜାହ୍ନବୀ ତହିଁ ବହୁଛି ନିତି
କେ ରୋକିପାରିବ ହୋ ତା' ସ୍ରୋତ ଗତି
ସଦା, ପ୍ରେମ ସୁନ୍ଦର
ମନ୍ତ୍ରମୟ ଆବେଶେ ଭରେ ଅନ୍ତର ।

ନିତ୍ୟ ସତ୍ୟ ଅମୃତ ଅଟଇ ପ୍ରେମ
ବିଲୟ ନାହିଁ ତା'ର, ନାହିଁ ବିରାମ,
ଜଗତ ଜନ ମନେ ସେ ପାରିଜାତ
ଚିର ସୌନ୍ଦର୍ଯ୍ୟମୟୀ କୁସୁମ ସେ'ତ
ସେ ଅମଳିନ,
ତା' ପାଇଁ ମୃତ୍ୟୁଞ୍ଜୟୀ ଭବଜୀବନ ।

ଦୀର୍ଘ ଅତୀତେ ରୋମ ସାମ୍ରାଜେ ଜଣେ
ନିଷ୍ଠୁର ରାଜା ଥିଲେ, ପୀଡ଼ନ୍ତି ଜନେ,
ଦୟା, ମାୟା, ମମତା, କ୍ଷମା, କରୁଣା
ମାନବିକତା, ଥିଲା ତାଙ୍କ'ଠି ଊଣା
ନିଷ୍ଠୁର ଅତି
ବୁଝନ୍ତି ନାହିଁ ମନ, ଭାବ, ପୀରତି ।

ସେ ଦେଶେ ଥିଲେ ଜଣେ ଧର୍ମଯାଜକ
'ଭାଲେଣ୍ଟାଇନ୍' ନାମ ସେ ଚିକିତ୍ସକ,

ଶ୍ରଦ୍ଧା, ସେବା, ପ୍ରେମର ସେ ଅବତାର
ତ୍ୟାଗ ତଟିନୀ ଅଟେ ତାଙ୍କ ଅନ୍ତର,
ସେ ମହନୀୟ
ରୋମ ସାମ୍ରାଜ୍ୟେ ସଦା ସେ' ବନ୍ଦନୀୟ ।

ଜନପ୍ରିୟତା, ତାଙ୍କ ନିଃସ୍ୱାର୍ଥ ପ୍ରେମ,
କରିଲା ରାଜରୋଷ ତା' ଆକର୍ଷଣ,
ସେ ନେଇ କାରାରୁଦ୍ଧ କରିଲେ ତାଙ୍କୁ
ଶାସନ ପଥେ ନିଷ୍କଣ୍ଟକ ହେବାକୁ ।
ସରବେ ଦୁଃଖୀ
ବିକଳ ପ୍ରଜାପ୍ରାଣ ସର୍ବେ ଅସୁଖୀ ।

ଭାଲେଣ୍ଟାଇନ୍ ରହି କାରାବାସରେ
ସେବା ବ୍ରତକୁ ପୁଣି ସେ ଆଦରିଲେ,
ବନ୍ଦିଗଣଙ୍କ ସେବା କରିଲେ ନିତି
ଆନନ୍ଦେ ଦିନ ତାଙ୍କ ଯାଉଛି ବିତି
ଶୁଣିଲେ ସିଏ,
କାରା ରକ୍ଷକ କନ୍ୟା ଅନ୍ଧୁଣୀଟିଏ ।

ଦୟାରେ ଦ୍ରବୀଭୂତ ହେଲା ଅନ୍ତର
ତା' ସେବା କରିବାକୁ କରିଲେ ସ୍ଥିର,
ଅକ୍ଲାନ୍ତ ଚିକିତ୍ସା ତା' କରିଲେ ଚକ୍ଷୁ
ମିଳିଲା ସଫଳତା ତାଙ୍କର ଲକ୍ଷ୍ୟ
ଫେଡ଼ିନୟନ
ସେ କିଶୋରୀ
ଦେଖିଲା ବିଶ୍ୱଭୁବନ ।

ଦେଖିଲା ଦେବୋପମ ସମ୍ମୁଖେ ଉଭା
କି ମୋହନ ମୂରତି, କି ମନଲୋଭା ।
ପବିତ୍ର ପଦେ ତାଙ୍କ ପ୍ରଣତୀ ଢ଼ାଳି
ନତ ନୟନେ ଛିଡ଼ା ହୋଇଲା ବାଳୀ
ଆନନ୍ଦ ସ୍ରୋତ,
ବହିଲା ଆତ୍ମଭେଦୀ, କି ବିମୋହିତ ।

ଦୁଇଟି ମନପ୍ରାଣ ହୋଇଲା ଏକ
ପ୍ରୀତି ପ୍ରତୀକ ଥିଲା ଏ' କାରାକକ୍ଷ
କ୍ଲଡ଼ିଅସ୍‌ଙ୍କ କ୍ରୋଧ ଆଗ୍ନେୟଗିରି
କାରା କକ୍ଷରେ ଚାଲେ ପୀରତି ଚୋରି !
ସେବା ନାମରେ,
ଦେଲେ ଦାରୁଣ ଦଣ୍ଡ ରାଜା ବନ୍ଦିରେ ।

ପଠାଇ ଦେଲେ ରାଜା ବଧଭୂମିକୁ
ନିର୍ମମେ ହତ୍ୟା କଲେ ଅପରାଧୀକୁ,
ଖେଳିଲା ହା ହା କାର ସେ ରାଜ୍ୟ ସାରା
ପ୍ରଜାଏ ମର୍ମାହତ, ହୋଇଲେ ପରା
ରାକ୍ଷସ ରାଜା,
'କି' କଲେ, ବୋଲି ବିଳପିଲେ ପରଜା

ଶଯ୍ୟା ଉପରେ ଥିଲା ଲଫାପା ଏକ
ଭିତରେ ଥିଲା ଏକ 'ଲାଲଗୋଲାପ',
ମୁଦ୍ରିତ ଥିଲା ତହିଁ ଧାଡ଼ିଏ ଚିଠି
ପ୍ରେୟସୀ 'ପ୍ଲାତିମା'ର ପ୍ରାପ୍ୟ ଏଇଟି,
ସ୍ତବ୍ଧ ହୋଇଲେ ରାଜା !
ଆଖି ଆଗରେ ଉଡ଼େ ପୀରତି ଧ୍ୱଜା ।

ଥିଲା ପ୍ରଭାବଶାଳୀ ଏ ସଂଘଟନ
ଘଟିଲା ରାଜମନେ ପରିବର୍ତ୍ତନ,
ହୋଇଲେ କ୍ଷମାଶୀଳ ସେ କାରୁଣିକ !
ରଖିଲେ ସତ୍ୟନୀତି ଧର୍ମର ଟେକ
କାଳ ଗରଭେ,
ସେ ହଜିଛନ୍ତି, ଅଛି କୀରତି ଭବେ ।



ବି.ଦ୍ରଃ ତୃତୀୟ ଖ୍ରୀଷ୍ଟାବ୍ଦରେ ରୋମର ଶାସକ ଥିଲେ "କ୍ଲିଡ଼ିଅସ୍" । ତାଙ୍କ ସମୟର ସଂଘଟନ । ଭାଲେଣ୍ଟାଇନ୍ ଫେବୃୟାରୀ ମାସ ୧୪ ତାରିଖରେ ମୃତ୍ୟୁବରଣ କରିଥିଲେ । ଏହି ଶୋକ ଦିବସ ଆଜି ବିଶ୍ୱରେ ପ୍ରେମୀଯୁଗଳଙ୍କ ଦ୍ୱାରା ପ୍ରେମ ଦିବସରୂପେ ପାଳିତ ହୁଏ ।

୧୦୭

# ପ୍ରତୀକ

'ଭଲ' ଶବ୍ଦ ପାଇଁ ଯଦି
କେବେ କେଉଁଠାରେ
ମିଳିବ ପ୍ରତୀକଟିଏ
ଏ' ବିଶ୍ୱ ମଣ୍ଡଳେ,
ତାହା ଅଟେ, 'ନାରୀ'
ଭଲପାଇଁ ସେ ଆସିଛି ଏ' ନାମଟି ଧରି ।

ଭଲ ପଣିଆର ଶିଳ୍ପ
ତା'ର ଦେହ ମନ
ଅଦେହ ଶିଳ୍ପୀ ରଚନା
ଭବ୍ୟ ମନୋରମ,
ମଧୁ ମାର୍ଦ୍ଦବତା
ବହୁଛି ଶରୀରେ, ମନେ,
ସୌନ୍ଦର୍ଯ୍ୟ ସରିତା ।

ସେ ଅଟଇ ସେବାଶୀଳା
ଦୟା କ୍ଷମାମୟୀ
ସେ ଶ୍ରଦ୍ଧା ଚନ୍ଦ୍ରମା ଚାରୁ
ପ୍ରୀତି ଜ୍ୟୋସ୍ନାମୟୀ
ଲାବଣ୍ୟ ଲତିକା,
ଭଲ ପଣିଆର ସିଏ
ପ୍ରତୀକ ବର୍ତ୍ତିକା ।
ସିଏ ସୃଷ୍ଟିମୟୀ
ସର୍ଜ୍ଜନାର ଚିରସ୍ରୋତା ନଈ,
ଏ ବିଶ୍ୱ ଜୀବନ ବନ ତା' ପାଇଁ ହରିତ
ମାନବ ସଂସ୍କୃତି ତେଣୁ ଚିର ପଲ୍ଲବିତ ।

•

୧୦୮

# ସୁଗୁଣ ଓ ଦୁର୍ଗୁଣ

କ୍ଷୁଦ୍ରଲତା ଗୁଳ୍ମଠାରୁ ମହାଦ୍ରୁମ ଯାଏ
ମେଦିନୀ ମଣ୍ଡଳେ ସଦା ଶୋଭା ପାଉଥାଏ,
ସାଗର ପର୍ବତ ନଦୀ ନାଳ ଘନବନ
ତୁଳସୀ ବିଛୁଆତିବି ହୁଅନ୍ତି ଜନମ ।

ଶ୍ରଦ୍ଧାରେ ନିଅନ୍ତି ଲୋକେ ତୁଳସୀକୁ ଘରେ
ଯତେନ ବଢ଼ାନ୍ତି ତାକୁ ଭକ୍ତି ଆନନ୍ଦରେ,
ତା' ମଧରେ କରିଥାନ୍ତି ଦେବତ୍ୱ ଆରୋପ
ଦିଅନ୍ତି ତା' ମୂଳେ ନିତି ସନ୍ଧ୍ୟା ଗନ୍ଧ ଧୂପ ।

ଆପେ ଆପେ ବଢ଼ିଥାଏ ବଣେ ବିଛୁଆତି
ଅପଚରା, ଅଲୋଡ଼ା ସେ, ଅଯତ୍ନ ବଢ଼ତି
ସରବେ ରହନ୍ତି ସଦା ତାହାଠାରୁ ଦୂରେ,
ତା' ବିଷାକ୍ତ ଅଂଶୁକଣା ପବନରେ ଉଡେ ।

ସୁଗୁଣ ପ୍ରତୀକ ଅଟେ ପବିତ୍ର ତୁଳସୀ
ଦୁର୍ଗୁଣ ପ୍ରତୀକ ପରା ବନ ବିଛୁଆତି,
ଗଭୀର ସାଧନାବଳେ ବିକଶେ ସୁଗୁଣ
ଦୃଢ଼ ମନୋବଳ ଲୋଡା, ଶ୍ରଦ୍ଧାମୟ ମନ ।

ଦୁର୍ଗୁଣ ବିସ୍ତାର ଲଭିଥାଏ ଆପେ ଆପେ
ଚାହେଁନା ପଛକୁ ବାରେ, ମାଡ଼ିଚାଲେ ଦର୍ପେ,
ସୁଗୁଣ ବଢ଼ିଲେ, ଧୀରେ ଦୁର୍ଗୁଣ ମଳିନ
ଶେଷରେ ସୁଗୁଣ ଗର୍ଭେ ହୋଇଯାଏ ଲୀନ
ସୁଗୁଣର ହେବା ଅଧିକାରୀ
ଜୀବନରୁ ଦୁର୍ଗୁଣ ସଂହାରି ।

•

୧୦୯

# ଶର୍ବରୀ

ମୁଁ ତୁମକୁ ଭେଟିଥିଲି ଆକାଶରେ
ନୀଳିମା ସାଗରେ
ପରିବ୍ୟାପ୍ତ ଅନ୍ତହୀନ
ବେଳାଭୂମି ପରେ ।
ଥିଲ ତୁମେ ଅର୍ଦ୍ଧନତା, ଯୋଡ଼ହସ୍ତା
ସମ୍ଭ୍ରମେ ଶର୍ବରୀ !
ଉଭା ହୋଇଥିଲ ତୁମେ
ଧ୍ୟାନ ମୁଦ୍ରାତୋଳି,
ହେବାକୁ ଗୋ ! ଶୂନ୍ୟେ ଏକାକାର,
ନୀଳିମା କାଳିମା ଦୁଇ
ଶୂନ୍ୟତାର ଅଭିନ୍ନ ସମ୍ଭାର ।

ଆକାଶ କହିଲା, "ସଖୀ
ସର୍ବରୀ ସୁନ୍ଦରୀ !
ମୋ' ବୁକୁ ବିତାନେ ଦିଅ
ଶାନ୍ତି ଆଉ ଶୀତଳତା ଭରି,
ତୁମ ଅପେକ୍ଷାରେ ଅଛି
ଶ୍ରମ କ୍ଳାନ୍ତ ଜଗତ ଜୀବନ,
ଅଭିଷେକ କର କୋଳେ
ଲେପି ଦେଇ ପ୍ରୀତିର ଚନ୍ଦନ ।
ନିଦ୍ରାର ଅଞ୍ଜନ ବୋଳ
ନୟନେ ନୟନେ,
ନିଖିଳ ଜଗତ ପ୍ରାଣ
ହଜିଯାଉ, ମଜ୍ଜିଯାଉ,
ଶାନ୍ତିମୟ ସୁପ୍ତିର ଧିଆନେ ।

•

୧୧୦

# ଭର୍ତ୍ତୃହରି

ଦୀର୍ଘ ଅତୀତରେ ଥିଲେ
ଉଜ୍ଜୟିନୀ ରାଜା 'ଭର୍ତ୍ତୃହରି'
ଧର୍ମପ୍ରାଣ ନୀତିନିଷ୍ଠ
ଥିଲା ହାତେ ଶାସନର ଡୋରି,
ଭାବୁକ, ଚିନ୍ତକ, କବି, ଦାର୍ଶନିକ ରାଜା
ଆନନ୍ଦରେ ପାଳୁଥିଲେ
ପୁତ୍ରପରି ସମସ୍ତ ପରଜା ।

'ପିଙ୍ଗଳା' ଓ 'ସିନ୍ଧୁମତୀ'
ନାମେ ତାଙ୍କ ଥିଲେ ଦୁଇରାଣୀ
ରୂପ ଗୁଣେ ସେବା ସ୍ନେହେ
ରାଜମନ ପାରିଥିଲେ ଜିଣି ।
କର୍ତ୍ତବ୍ୟରେ କେ କାହାକୁ ନଥିଲେ ସେ ଊଣା
ନଥିଲା ପ୍ରତିଯୋଗିତା
ରାଜମନ କରିବାକୁ ବଶ ।

ମୃଗୟା ବିନୋଦେ ରାଜା
ଚୋଳିଥିଲେ ବନ ଅଭିସାର
ସାଥେ ଥିଲେ ପାଟରାଣୀ
ବିନୋଦିନୀ 'ପିଙ୍ଗଳା' ତାଙ୍କର
ଶିବିରରେ ଥିଲେ ରାଣୀ ରାଜପଥ ଚାହିଁ,
ଘୋଟିଲା ଅନ୍ଧାର ବନେ
ମୃଗୟାରୁ ସେ ଫେରିଲେ ନାହିଁ ।

ମର୍ମାହତ ହେଲେ ରାଣୀ
ଶୋକାବେଗେ ହୋଇଲେ ମୂର୍ଚ୍ଛିତା
ସଂଜ୍ଞା ତାଙ୍କ ଫେରିଲାନି
ନିମିଷକେ ହେଲେ ଭୂଲୁଣ୍ଠିତା
ଖେଳିଗଲା ଶିବିରରେ ଶୋକର ଲହରି,
ତୋଳିଲେ ବିଳାପ ସର୍ବେ
ଦାସ ଦାସୀ ଶିବିର ପ୍ରହରୀ ।

ବିକଳ କ୍ରନ୍ଦନ ରୋଳେ
ମୁଖରିତ ହେଲା ଘନବନ
ତରୁତଳେ ପର୍ଣ୍ଣଶେଯେ
ପଥହରା ନିଃସଙ୍ଗ ରାଜନ
ଦୁଃସ୍ୱପ୍ନ ଦେଖି ସେ କଲେ ବିକଳେ ଚିତ୍କାର
ନଥିଲେ ପାଖରେ କେହି
ଘୋଟିଥିଲା ଘନ ଅନ୍ଧକାର ।

ହାତରେ ମଶାଲ ଧରି
ସୈନ୍ୟଗଣ ଖୋଜନ୍ତି ରାଜାଙ୍କୁ
ମଣିମା !....ମଣିମା !....ଡାକି
ଚାଲିଥାନ୍ତି ତାଙ୍କୁ ଭେଟିବାକୁ,
ଆକସ୍ମିକ ଘଞ୍ଚବନେ ହୋଇଗଲା ଭେଟ
ଶିବିରେ ରାଜନେ ଫେରି
ଶୋକାକୁଳେ ହେଲେ ଜର୍ଜରିତ ।
ନଅରକୁ ଫେରିଲେ ରାଜନ
ରାଜ୍ୟ ସାରା ଶୋକପକ୍ଷ ହୋଇଲା ପାଳନ
ବ୍ୟଥାହତ ହେଲେ ପ୍ରଜାଗଣ ।

୨

ସାନରାଣୀ ସିନ୍ଧୁମତୀ
ସେବାମୟୀ ଶ୍ରଦ୍ଧାର ଜାହ୍ନବୀ
ରାଜମନ ଶାନ୍ତକଲେ
ତୋଳି ତାଙ୍କ ପ୍ରଣୟ ପୂରବୀ,
ବିଚ୍ଛେଦ ବିଧୁର ମନ ହେଲା ଉଲ୍ଲସିତ
ଅଚିରେ ହୋଇଲେ ସିଏ
ଶୋଭାମୟୀ ପ୍ରୀତି ପାରିଜାତ ।
ସବୁ ଦୁଃଖ ଭୁଲିଗଲେ ରାଜା
ପାଳିଲେ ସେ ପୁତ୍ରସମ ପ୍ରଜା ।

ଦିନେ ଜଣେ ଯୋଗୀ ଆସି
ଭର୍ତ୍ତୃହରି ରାଜାଙ୍କ ହସ୍ତରେ
'ଅମୃତଫଳ' ଗୋଟିଏ
ଅରପିଲେ ତାଙ୍କୁ ଶ୍ରଦ୍ଧାଭରେ,
କହିଲେ, 'ରାଜନ ଏହା କରନ୍ତୁ ଭକ୍ଷଣ,
ଦୀର୍ଘ ହେବ ଜୀବନ ଯୌବନ ।'

ନ ଖାଇ ଫଳଟି ରାଜା, ଅରପିଲେ
ରାଣୀଙ୍କୁ ତାଙ୍କର
ଏହା ତାଙ୍କ ପ୍ରୀତି ପ୍ରେମ, ପ୍ରତ୍ୟୟର
ଶ୍ରଦ୍ଧା ଉପହାର ।

ଆନନ୍ଦରେ ଉଦ୍‌ବେଳିତ
ହେଲା ରାଣୀ ମନ
ସତେ ଅବା ତାଙ୍କ ପାଇଁ
ଏ' ଅମୂଲ୍ୟ ଧନ ।
ଅମାତ୍ୟ ଅଟନ୍ତି କିନ୍ତୁ
ରାଣୀଙ୍କର ଗୋପନ ପ୍ରେମିକ

ଗୋପନେ ଫଳଟି ଦେଇ
କଲେ ରାଣୀ ପ୍ରୀତି ଅଭିଷେକ ।
କହିଲେ ବୁଝାଇ
ନଜାଣନ୍ତୁ କେହି ।

ଅଦ୍ଭୁତ ମଣିଷ ମନ, ଅମାତ୍ୟଙ୍କ
ବାନ୍ଧବୀ ନର୍ତ୍ତକୀ,
ଅମୃତ ଫଳଟି ନେଇ ଶ୍ରଦ୍ଧାଭରେ
ଦେଲେ ହାତେ ଟେକି
ଆନନ୍ଦରେ ସେ ହେଲା ବିହ୍ୱଳ
ଉପହାର ତା' ପାଇଁ ବିରଳ ।

ନର୍ତ୍ତକୀ ଭାବିଲା ବସି
ଏ ଦୁର୍ଲଭ ଫଳ
ରାଜାପଦେ ସମର୍ପିବ
ସେ, ପ୍ରଜାବତ୍ସଳ ।
'ଭକ୍ଷିବାକୁ ସିଏ ଏକା ଯୋଗ୍ୟ'
'ମହାଫଳ' ହେଉ ରାଜଭୋଗ୍ୟ ।

ରାଜାଙ୍କୁ ଭେଟିଲା ଯାଇ ଆନନ୍ଦେ ନର୍ତ୍ତକୀ
ଶ୍ରୀହସ୍ତରେ ଅରପିଲା ଦିବ୍ୟ ଫଳଟିକି
ରାଜା, ଚାହିଁଲେ ବିସ୍ମୟେ,
କିପରି ଅଲଭ୍ୟ ଫଳ
ଗଲା ଏହି ନର୍ତ୍ତକୀ ଆଳୟେ ? ?

କରିଲେ ଅନୁସନ୍ଧାନ, ଏ'ରହସ୍ୟ
କରିବାକୁ ଭେଦ,
ରାଜାଙ୍କ ସନ୍ଦେହ, 'ସତ୍ୟେ
ହେଲା ପରିଣତ ।'
ଆକାଶକି ପଡ଼େ ଶିରେ ଭାଙ୍ଗି,
ରାଣୀ ଏ' ଭିଆଇଛନ୍ତି
ପାତକିନୀ ସାଜି ।

ଆସିଲା ସଂସାର ପ୍ରତି
　　　　ଗଭୀର ବିତୃଷ୍ଣା
ବାନପ୍ରସ୍ଥେ ଗଲେ ଚାଲି
　　　　ରାଜା ମହାମନା ।
ଅନୁଜ ବିକ୍ରମାଦିତ୍ୟେ
　　　　ଅର୍ପି ସିଂହାସନ
କହିଲେ ପାଳିବ ପ୍ରଜା,
　　　　ଯଥା ପୁତ୍ରସମ ।
　　　　ଭୋଗମୟ ସଂସାର ଅସାର
ଏଠାରେ ଚାଲିଛି ନିତି
　　　　ପ୍ରୀତି ଆଉ ପ୍ରତ୍ୟୟ ସଂହାର ।
ଏକାନ୍ତ ନିଜର ହୋଇ କେହି ନାହିଁ ଜଣେ
ଶତଧିକ୍ ମୋର ଏଇ ରିକ୍ତ ରାଜପଣେ ।

ହରିଦ୍ୱାରେ ଗଙ୍ଗାକୂଳେ
　　　　ତପୋମଗ୍ନ ହେଲେ ଭର୍ତ୍ତୃହରି
ଆଜିବି ସେ ଗୁମ୍ଫା ଅଛି
　　　　ତ୍ୟାଗ ତୀର୍ଥ ତାଙ୍କ ନାମ ଧରି ।
ମହାରାଜା, ମହାକବି, ମହାଯୋଗୀ ଯଶ
ଲିଭାଇ ପାରିନି 'କାଳ' ଦେଇ କ୍ରୂର ସ୍ପର୍ଶ,
　　　　'ଭର୍ତ୍ତୃହରି ଗୁମ୍ଫା'
ପୁରାଣ ପ୍ରସିଦ୍ଧ ତାହା
　　　　ପ୍ରଚାରୁଛି ସେ ମହାନ୍ ଗାଥା

•

ବି.ଦ୍ର. ନୀତିଶତକ, ଶୃଙ୍ଗାର ଶତକ ଓ ବୈରାଗ୍ୟ ଶତକର ରଚୟିତା, ରାଜା ଭର୍ତ୍ତୃହରି ।

୧୧୧

# ପ୍ରାଚୁର୍ଯ୍ୟ

ପ୍ରାଚୁର୍ଯ୍ୟର ପୀଡ଼ନାରେ ଜର୍ଜରିତ ମୁହିଁ
କା' ଆଗେ କହିବି ଦୁଃଖ କେ ବୁଝିବା ପାଇଁ,
ଯାହାକୁ କହୁଛି ଅବା ମୋର ମନ ଖୋଲି
ସେ କହନ୍ତି, 'ମୁଣ୍ଡ ତୁମ ବିଗିଡ଼ିଛି' ବୋଲି
ବ୍ୟଥାହତ ଏ' ଅନ୍ତର କଥା,
ବୁଝି ପାରନ୍ତିନି କେହି, ପ୍ରାଚୁର୍ଯ୍ୟର ବ୍ୟଥା ।

ଏ ଜୀବନ ସାଥୀ ଥିଲା ଧୂଳି ବାଲି ମାଟି
କପୋତ କପୋତୀ ବଣି କେତେ ଘରଚଟି,
କୁମ୍ଭାଟୁଆ ଭଦାଳିଆ ଶୁଭ ଶଙ୍ଖଚିଲ
ପାହାଡ଼ ପର୍ବତ ନଈ ନାଳ ବଣବିଲ
ବାଲ୍ୟସାଥୀ ପ୍ରିୟବନ୍ଧୁଗଣ
ଶ୍ରଦ୍ଧା ସିଂହାସନ ସର୍ବେ ମଣ୍ଡିଥିଲେ ମମ ।

ଆନନ୍ଦେ ଗଡ଼ିଛି କେତେ ଘାସ ଗାଲିଚାରେ
ଭରିଲି ଅଗଣ ଗଛ ଲତା କୁସୁମରେ,
ଗଛ ପତ୍ର ଫୁଲସାଥେ ହୁଏ କଥା ନିତି
ଫୁଲ ମଣ୍ଡପରେ ବସି ଶୁଣେ ଫୁଲ ଗୀତି,
ଗାଏ କାନେ କୁସୁମ କିଶୋରୀ
ଜୀବନ ଜଞ୍ଜାଳ ବ୍ୟଥା ଯାଏ ମୁଁ ପାସୋରି ।

ଆସିଲା ପ୍ରାଚୁର୍ଯ୍ୟ ବନ୍ୟା ଲଘିବେନି କୂଳ
ଓପାଡ଼ିଲା, ଘାସ ଲତା ଗଛଚେର ମୂଳ,
ବିଛାହେଲା ଶିଳାଶଯ୍ୟା ଚହଟ ଚିକ୍କଣ

ପ୍ରତିବିମ୍ବିତ ମୁଖଶ୍ରୀ ସତେବା' ଦର୍ପଣ
ଦିଶିଲା ତା' ଅତି ଚମତ୍କାର,
ଚାପିଦେଲା ପ୍ରକୃତିର ସବୁଜ ସମ୍ଭାର ।

ଅଭିମାନେ ଗଲେ ଚାଲି ବୃକ୍ଷବନ୍ଧୁ ଗଣ
କାକମାନେ କରିଲେନି କୁଳାୟ ନିର୍ମାଣ,
ଆସୁନି ଗୁଣ୍ଡୁଚିମୂଷା ଚଢ଼ିବାକୁ ଗଛ
ପକ୍ଷୀ ନୃତ୍ୟ ଚାଲୁ ନାହିଁ ହୋଇ ଆଗପଛ,
ଆନନ୍ଦରେ ଏ ଡାଳୁ ସେଡାଳେ
ଖୁଦ ଖୁଣ୍ଟିବାକୁ ଆଉ ନ ଆସନ୍ତି ତଳେ ।

ଏ ଜୀବନ ସାଥିଗଣ ସବୁଗଲେ ଚାଲି
ହୋଇଗଲି ବନ୍ଧୁହରା ପ୍ରାଚୁର୍ଯ୍ୟ ଆଦରି,
ଭିତରେ ଭିତରେ ମନ ହୁଏ କଦର୍ଥନା
ପ୍ରକୃତିର ଶାନ୍ତିମୟ ପ୍ରିୟ ବନ୍ଧୁବିନା ।
ନିରାନନ୍ଦେ ଚାହେଁ ଶୂନ୍ୟତାରେ
ଖୋଜେ ମନେ ମନେ ଖାଲି ଭିତରେ ବାହାରେ ।
ସ୍ୱପ୍ନଭୂମେ ଆସନ୍ତି ସେ କେବେ
ଭରି ଦିଅନ୍ତି ହୃଦୟ ଆନନ୍ଦ ବିଭବେ ।
ଗର୍ବ, ଦର୍ପ, ଅହଂକାର
ମାନ, ଆଉ ସମ୍ମାନ ପୀଡ଼ନା,
ଅଶାନ୍ତ କରେ ଏ' ମନ
ବହୁ ଦୂରେ ମୁକ୍ତିର କାମନା ।

•

୧୧୨

# ଆହେ ଅଗ୍ନି

ଆହେ ଅଗ୍ନି,
ତୁମ ତୀବ୍ର ପ୍ରଜ୍ୱଳନ କର ଏବେ ଶାନ୍ତ,
ହେବନିକି ଲେଲିହାନ ଶିଖା ନିର୍ବାପିତ,
ସର୍ବେ ଆଜି ଚାହିଁଛନ୍ତି ବିକଳେ ତୁମକୁ
ଜ୍ୱାଳା ଦଗ୍ଧ, ଶାନ୍ତି ଲଭିବାକୁ
ହୁଅ ସ୍ଥିର ସଖା !
ଶାନ୍ତ ହେଉ ଜ୍ୱାଳାମୟୀ ଶିଖା ।

ସମସ୍ତଙ୍କ ହୃଦୟରେ ବୁଣୁଛ ସ୍ଫୁଲିଙ୍ଗ
ହୁତୁ ହୁତୁ ଜଳେ ଶିଖା ଅବିରାମ ତବ,
ଚତୁର୍ଦ୍ଦିଗେ ରାଗ, ରୋଷ କ୍ରୋଧ ଅହଂକାର
ସମାଜରେ ଉଦ୍‌ବେଳିତ ଅନଳ ସାଗର
ସ୍ୱାର୍ଥଯଜ୍ଞେ ପଡୁଛି ଆହୁତି
ସହୃଦୟ ସେ ବିଭୁ ବିଭୂତି
ଅବିରାମ ଗତି ।।

ଶାନ୍ତି ମୈତ୍ରୀ ପ୍ରୀତି ଶ୍ରଦ୍ଧା ସୌହାର୍ଦ୍ଦ୍ୟ କରୁଣା
ଏ ଅଗ୍ନି କରଇ ଶୁଷ୍କ ମମତା ଝରଣା,
ଛନ୍ଦହରା ମଧୁଛନ୍ଦ ମାନବିକତାର
ସବୁଠାରେ ଅଗ୍ନିମେଳା ଉତ୍ସବ ଅଗ୍ନିର
ହେ ବାରିଦଗଣ
ପଶୁଛୁ ଶରଣ
ପ୍ରଳୟ ଅଗ୍ନିକୁ ପ୍ରଭୁ ! କର ନିର୍ବାପନ
ଶାନ୍ତ ହେଉ ଧରା,
ସୁରକ୍ଷିତ ହେଉ ଏହି ସର୍ଜନା ପସରା ।

•

୧୧୩

# ଭକ୍ତିର ଶକ୍ତି

ଶ୍ରୀକ୍ଷେତ୍ର ପୁରୀରୁ ଛଅ କୋଶ ଦୂରେ
ଥିଲା ଏକ ଛୋଟ ଗ୍ରାମ
ଅଖ୍ୟାତ ପଲ୍ଲୀଟି ବିଖ୍ୟାତ ହେଲା
'କାଣ୍ଡାଗୋଦା' ତା'ର ନାମ ।

ତା'ରି କୋଳରେ ଜନମିଥିଲେ ହେ,
ଭକତ ମନେଇ ସାହୁ
ତାଙ୍କର ପରମ ଆରାଧ ଦେବତା
ଥିଲେ ପ୍ରଭୁ 'ମହାବାହୁ ।'

ନିଇତି ଦିନ ସେ ଚାଲି ଚାଲି ଆସି
ପ୍ରଭୁ ଦରଶନ କରି
ବାହୁଡ଼ନ୍ତି ଗ୍ରାମେ ନୀଳାଚଳ ଧାମୁ,
ମନରେ ଉଲ୍ଲାସ ଭରି ।

ବୟସ ବଢ଼ିଲା ବାର୍ଦ୍ଧକ୍ୟ ଆସିଲା
ନପାରିଲେ ଚାଲି ଆଉ
ପ୍ରଭୁଙ୍କୁ ଦର୍ଶନ କରି ପାରିଲେନି
ଡାକିଲେ, ହେ ଚଉବାହୁ !

ତବ ଦରଶନ ପାଇପାରୁନାହିଁ
ବ୍ୟାକୁଳିତ ମନ ପ୍ରାଣ,
ତୃଷିତ ଅନ୍ତର ହେ ହୃଦୟେଶ୍ୱର
କାକୁତି ମିନତି ଘେନ
ଚାହେଁ ଦରଶନ ନିତି,
ତବ ଶ୍ରୀମଖକୁ ଚାହିଁ ଚାହିଁ ପ୍ରଭୁ !
ଏ ଜୀବନ ଯାଉ ବିତି ।

ସ୍ୱପ୍ନାଦେଶେ ପ୍ରଭୁ କହିଲେ, ମନେଇ !
ତୁମେ ମୋ ଭକତମଣି,
ଦାରୁ ରୂପେ ମୁହିଁ ଆସିବି ଭାସି ହେ !
ଲାଖିବି 'ନେଚ' ମୁହାଁଣି
ବିଗ୍ରହ ଗଢ଼ିବ ନେଇ
ଭକତି ପାଶରେ ବନ୍ଧା ଭଗବାନ
ଭକତ ସନ୍ତୋଷ ପାଇଁ ।

'ପ୍ରଭୁ ବିଜେହେବେ, ପ୍ରଭୁ ବିଜେହେବେ'
ଚହଲି ଉଠିଲା ଗାଁ,
ଜଗତଠାକୁର ପାଦ ପଖାଳିବେ
ଜଗତେ ରଟିବ ନାଁ ।
ଦାରୁ ଲାଗିଛନ୍ତି ନେଚ ମୁହାଁଣିରେ
ଗାଁ ଯାକ ଲୋକ ଠୁଳ
ଜୟ ଜୟ ଧ୍ୱନି ହୁଳହୁଳି ନାଦେ
ଉଛୁଳଇ ନଈକୂଳ ।

ଗାଁ ଲୋକ ସବୁ ସେ ପବିତ୍ର ଦାରୁ
କାନ୍ଧକୁ ଟେକିଲେ ମିଶି
ଟେକି ପାରିଲେନି ଯେତେ ଯାହା କଲେ
ଗୋଟି ଗୋଟି ଗଲେ ଖସି ।

ଭକତ ମନେଇ ଧ୍ୟାନେ ବସିଯାଇ
ପ୍ରଭୁଙ୍କୁ ଗୁହାରି କଲେ
ମୋ କାନ୍ଧକୁ ପ୍ରଭୁ ଆସନ୍ତୁ ଆସନ୍ତୁ,
ଅପାର କରୁଣାବଳେ
ପଙ୍ଗୁ ଲଂଘିବ ଗିରି
'କାଣ୍ଡ ଗୋଦାଗ୍ରାମେ' ପ୍ରଭୁ ବିରାଜିବେ
ସବୁ ଦୁଃଖ ଯିବୁ ଭୁଲି ।

ଭକତ ମନେଇ ପ୍ରଣମି ଦାରୁଙ୍କୁ
ଉଠାଇଲେ କାନ୍ଧ ପରେ
ସୋଳ ବିଡ଼ା ପରି ଲାଗିଲା ହାଲୁକା
ବାହୁଡ଼ିଲେ ସନ୍ତୋଷରେ ।

ଚକିତ ହୋଇଲେ ଗାଁ ଲୋକ ସବୁ
ଜୟ ଜଗନ୍ନାଥ ଧ୍ୱନି
'କାଣ୍ଡଗୋଦା' ଦାଣ୍ଡ ଉଛୁଳି ଉଠିଲା
ବହେ ଭକ୍ତି ସୁରଧୁନୀ ।

ତିନିଠାକୁରଙ୍କ ତିନିଟି ମୂରତି
ଦିବ୍ୟଦାରୁ ହେଲା ଗଢ଼ା
ମନ୍ଦିରେ ପ୍ରତିଷ୍ଠା ହେଲେ ମହାପ୍ରଭୁ
ଭକ୍ତି ଭୋଗ ହେଲା ବଢ଼ା ।

ସେଇଦିନଠାରୁ କାଣ୍ଡଗୋଦା ଗ୍ରାମ
ତୀର୍ଥପୁରୀ ରୂପେ ଖ୍ୟାତ
ଜଗତଜନଙ୍କ ପରିତ୍ରାଣ ପାଇଁ
ବିଜେ ତହିଁ ଜଗନ୍ନାଥ

ପାଞ୍ଚ ଶହବର୍ଷ ତଳର ଘଟଣା
ଭକତ ମନେଇ ସାହୁ
ଏବେବି ଅଛନ୍ତି ଲୋକଙ୍କ ମନରେ
ବିରାଜିତ ଚଉବାହୁ ।

•

ତଥ୍ୟ - 'ଶ୍ରୀମନ୍ଦିର' ପ୍ରଥମବର୍ଷ, ତୃତୀୟ ସଂଖ୍ୟା, ମାର୍ଚ୍ଚ ୧୯୮୨

୧୧୪

# ମହାପର୍ବ

ଜୀବନର ମହାପର୍ବ ଆସିଛି ଘନେଇ
ବିଧୁରା ରାଗିଣୀ ତୋଳେ ସୁପ୍ତ ସାହାନାଇ,
କହେ, ନାହିଁ...ନାହିଁ...ନାହିଁ,
ସର୍ବେ ଆଜି କ୍ଳାନ୍ତ
ବିବର୍ଣ୍ଣ ବସନ୍ତ ।

ନୟନ କହୁଛି, "ମମ ଜ୍ୟୋତିଧାରା ଆଜି
ଲିଭି ଲିଭି ଆସିଲାଣି," ଦମ୍ଭ ଯାଏ ଭାଜି,
ତାହା ସର୍ବ ଶକ୍ତିର ଆଧାର
ତା' ବିନୁ ମଣିଷ ଭୋଗେ
ଚିର ଅନ୍ଧକାର ।

ଶୁଭୁନି ଶ୍ରବଣେ ଆଉ ଶ୍ରାବଣ ସଙ୍ଗୀତ
ବସନ୍ତ ଉତ୍ସବ ଗୀତ ମୁଗ୍ଧ ପୀକ ରୁତ,
ସେ ସଙ୍ଗୀତେ ପ୍ରାଣ ପୁଲକିତ
ହେଉ ନାହିଁ ଆଉ
ଧ୍ୱନିମୟୀ କର୍ଣ୍ଣ ଥାଉ ଥାଉ ।

ମଉଳି ଯାଇଛି ଆଜି ମୁଖର ମୟୂଖ
ପଳିତ ଅଟଇ ଦନ୍ତ ଗ୍ରନ୍ଥି ଶିଥିଳିତ,
ଆଙ୍କି ରେଖା ଶତ
ବିକୃତ ବଦନ,
ଅବୋଧ ତା' ଭାଷ୍ୟ ପ୍ରକରଣ ।

ସାରଲ୍ୟ ପ୍ରତୀକ ଅଟେ
ସେ ଦୀର୍ଘ 'ନାସିକା'
ଅଟେ ତାହା ହଂସଧ୍ୱନି
ଧାରା, ପ୍ରବାହିକା,
ସଙ୍କୁଚିତ ତା'ର ଗତିପଥ
ରୁଦ୍ଧ ହୋଇଗଲେ ହେବ
ଜୀବନର, ଯବନିକା ପାତ ।

ଜୀବନ ବ୍ରତର ବନ୍ଧୁ ଅଟେ ହସ୍ତ ବେନି
ରହିଥାନ୍ତି ପ୍ରତୀକ୍ଷାରେ କର୍ମ ଅର୍ଘ୍ୟ ଘେନି,
ପୂଜିବାକୁ ଜୀବନ ବେଦିରେ
ନିତ୍ୟ ସବିଧିରେ
ସେ କର୍ମ ଯୋଗରେ ।

ଶ୍ରାନ୍ତ କ୍ଳାନ୍ତ ପଦଦ୍ୱୟ ମନ୍ଥର ତା' ଗତି
ତଥାପି ସେ ଧାଇଁବାକୁ ବ୍ୟାକୁଳିତ ଅତି
ଦ୍ରୁତ ଗତି ତୋଳି,
ଉଦ୍ୟତ ହୋଇଲେ ବେନି
ଉଠନ୍ତି ବାଉଳି ।

ମସ୍ତକ ଉନ୍ନତ ଥିଲା ଯଥା ମହିଧର
ସ୍ୱାର୍ଥ ପାଇଁ କରି ନଥିଲା ସେ ନତଶିର,
ଆଜି ତା, ଆନତ
ସହି ପାରି ନାହିଁ ଏତେ
ଘାତ ପ୍ରତିଘାତ
ଯେ ଦିଗେ ଚାହିଁଲେ ଶୁଭେ 'ନାହିଁ ନାହିଁ, ନାହିଁ'
ସତେ କ'ଣ ଜୀବନର ମହାସତ୍ୟ ଏହି
ଏହା ଜରାର ସ୍ତବନ
ଏଥିପାଇଁ ହେବି ମୁହିଁ କିମ୍ବା ମୁହ୍ୟମାନ ?

•

୧୧୫

# ଦିବ୍ୟ ଲେଖନୀ

ମହାଦିବସ ଆଜି ମହାନ ତିଥି
ସୃଷ୍ଟିଶୀଳ ଲେଖନୀ ନେଲା ବିରତି;
ପାରିବ ନାହିଁ ରଚି ସୃଷ୍ଟି ସମ୍ଭାର
ସୃଜନ ଶକ୍ତି ତା'ର ଆଜି ଅଚଳ ।

ବିଦାୟ ଉତ୍ସବ ତା' ପାଳିବି ମୁଦେ
ଥାପିବି ସିଂହାସନେ ଆନନ୍ଦେ ହୃଦେ,
ତା' ହେବ ନିତି ମୋର ଆରାଧ୍ୟ ଦେବ
ପୂଜିବି ଅର୍ପି ମୋର ଭକ୍ତି ନୈବେଦ୍ୟ ।

ତା'ର କରୁଣା ପାଇ ହେଲି ମୁଁ କବି
ସେ ମୋତେ କରିଅଛି ଉଦିତ ରବି ।
କରିଛି ଆଲୋକିତ ଜୀବନ ମମ
ଦେଖାଇ ଅଛି ବାଟ ଜୀବ ପରମ ।

ଜୀବନେ କେତେ ଦୁଃଖ ହରିଛି ସିଏ
ଦେଇଛି କେତେ ଶାନ୍ତି ଜନନୀ ପ୍ରାୟେ,
ଧରିଲେ ହାତେ ପ୍ରିୟ ଲେଖନୀ ମୋର
ଭୟରେ ଦୁର୍ଭାବନା ହୁଅଇ ଦୂର ।

କଳ୍ପନା ଆକାଶରେ ମୁଁ ଘୂରି ବୁଲେ
ଅନନ୍ତ ବିହାୟସେ ବିହଙ୍ଗ ତୁଲେ,
ଉପଭୋଗେ ପ୍ରକୃତି ଛବିଳ ଛବି
ଅନନ୍ତ ନୀଳାୟନ ଅମୃତସ୍ରାବୀ ।

ଭାବ ତରଙ୍ଗେ, ହୁଏ ଦ୍ରବିତ ମନ
ଘୋଟେ ମନ ଅନ୍ତରେ ବାରିଦ ଘନ
ଲେଖନୀ ଚାହିଁଥାଏ ଚାତକ ପରି
ସନ୍ତୋଷେ ପାନକରେ ବର୍ଷଣ ବାରି ।

ସୃଜନୀ ଶକ୍ତି ତହିଁ ଉଛୁଳା ନଈ
ବାଧା ବନ୍ଧନ କିଛି ମାନଇ ନାହିଁ
ସୃଷ୍ଟି କରେ ମୁଁ ଭାବ ଭବ୍ୟ ସମ୍ଭାର
ଜୀବନର ଅଟେ ମୋ' ତା' ଅଙ୍ଗୀକାର ।

ସୃଷ୍ଟିରେ ଆତ୍ମହରା ହୁଏ ମୁଁ ନିତି
ଏକାଗ୍ର ଚିତ୍ତେ ଲକ୍ଷ୍ୟ ପଥରେ ଗତି,
ତପସ୍ୱୀ ପରି ରହେ ତପରେ ମଗ୍ନ
ସର୍ଜନା ପାଇଁ ଅଟେ ଏ ଶୁଭଲଗ୍ନ ।

ଜୀବନ ଅଟେ ଦୀର୍ଘ ସାଧନା ନଈ
ଲଙ୍ଘି ବାଧା ବିପଦ ଯାଉଛି ବହି,
ଲେଖନୀ ପାଇଁ, ମୁହିଁ ଅଟଇ ଧନ୍ୟ
ସେ ମୋର ପୂଜ୍ୟଦେବ, ନାହିଁ କେ ଅନ୍ୟ
ମୁଁ ତା' ପ୍ରେମ ପାଗଳ,
ଦେଇଛି ଜୀବନେ ମୋ ଅମିତ ବଳ ।

•